# ବିଦ୍ୟାପତି ପଦାବଳୀ




ଅନୁବାଦକ

ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର

# ବିଦ୍ୟାପତି ପଦାବଳୀ




ଅନୁବାଦକ

ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର

# ଅଗ୍ରଲେଖ

‘ବିଦ୍ୟାପତି’ ସମଗ୍ର ଭାରତର ବୈଷ୍ଣବ-ସାହିତ୍ୟରେ ସୁପରିଚିତ । ତାଙ୍କର କାନ୍ତ-କୋମଳ-ପଦାବଳୀ ଓ ପ୍ରାଣସ୍ପର୍ଶୀ ବର୍ଣ୍ଣନାଶୈଳୀ ଅଗଣିତ ପାଠକଙ୍କୁ ପ୍ରେମ-ପୁଲକିତ କରି ରଖିଅଛି । ଓଡ଼ିଶାର ବୈଷ୍ଣବ କବିମାନଙ୍କ ଉପରେ ମଧ୍ୟ ‘ବିଦ୍ୟାପତି’ଙ୍କର ପ୍ରଭାବ ପଡ଼ିଥିବା ସ୍ୱାଭାବିକ । ସ୍ୱର୍ଗତ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ‘ବିଦ୍ୟାପତି’ଙ୍କ ଅନେକ କବିତାର ଯେଉଁ ଅନୁବାଦ କରି ଯାଇଛନ୍ତି, ତାହା ବର୍ତ୍ତମାନ ଏହି ପୁସ୍ତକ ଆକାରରେ ‘ଓଡ଼ିଶା ସାହିତ୍ୟ ଏକାଡେମୀ’ ପକ୍ଷରୁ ପ୍ରକାଶିତ ହେଲା । ପାଠକ ପାଠିକା ମାନଙ୍କର ଏହା ଉପଭୋଗ୍ୟ ହେଉ, ଏହା ହିଁ ମୋର କାମନା । ଇତି ।

ଭୁବନେଶ୍ୱର
ତା ୧୦ । ୩ । ୭୫

ସନ୍ତୋଷକୁମାର ସାହୁ
ସଭାପତି

# ଦୁଇପଦ

ଓଡ଼ିଶାର ପାଠକ ପାଠିକାଙ୍କ ସମକ୍ଷରେ ଏହି 'ବିଦ୍ୟାପତି ପଦାବଳୀ, ଉପସ୍ଥାପନ କଲାବେଳେ, ଏହାର ଅନୁବାଦକ ସ୍ୱର୍ଗତ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ପ୍ରତି, ମୁଁ ସ୍ୱତଃ ଅନୁରକ୍ତ ହୋଇଉଠେ, ସେ ଥିଲେ ନାନା ଭାଷା ଓ ସାହିତ୍ୟରେ ଅସାଧାରଣ ପଣ୍ଡିତ । ପ୍ରାଚୀନ ଓଡ଼ିଆ ବୈଷ୍ଣବ ସାହିତ୍ୟର ଅନୁବୋଧ ନିମନ୍ତେ 'ଜୟଦେବ' ତଥା 'ବିଦ୍ୟାପତି'ଙ୍କର ରଚନାବଳୀର ତୁଳନାତ୍ମକ ଆଲୋଚନା କେତେଦୂର ଆବଶ୍ୟକ, ତାହା ବୁଝାଇ କହିବା ଅନାବଶ୍ୟକ, ଏହି ଅନୁବାଦ ପ୍ରକାଶ ପାଇବା ଦ୍ୱାରା ପ୍ରାଚୀନ ଓଡ଼ିଆ ସାହିତ୍ୟର ବିଶୁର ବିଶ୍ଳେଷଣ ନିମନ୍ତେ ସମୀକ୍ଷକମାନେ 'ସମ୍ବଳବନ୍ତ' ହୋଇ ଉଠିବେ, ସନ୍ଦେହ ନାହିଁ, 'ମୈଥିଳୀ-କୋକିଳ' ବିଦ୍ୟାପତି, ଉତ୍କଳ କୋକିଳ 'ଜୟଦେବ'ଙ୍କର ଜନ୍ମଭୂମିରେ ପାଠକମାନଙ୍କର ଅନ୍ତରକୁ ଅନୁକମ୍ପିତ କରି, ନବୀନ ମଧୁର ତାନରେ ସାହିତ୍ୟ କୁଞ୍ଜକୁ ଯେ ଧ୍ୱନିତ କରିବେ, ଏଥିରେ ସନ୍ଦେହ ନାହିଁ । ଇତି ।

ଭୁବନେଶ୍ୱର
ତା ୨୫ । ୩ । ୭୫

ଗୌରୀକୁମାର ବ୍ରହ୍ମା
ସେକ୍ରେଟାରୀ

# ସ୍ୱଳ୍ପ ସୂଚନା

ଭାରତୀୟ ବାଗ୍‌ଦେବୀ-ଚରଣ-ସରୋରୁହସେବୀ ପ୍ରାଚୀନ ମନୀଷୀ-ମଣ୍ଡଳୀ ମଧ୍ୟରେ ମିଥିଳାମଣ୍ଡନ ବିଦ୍ୟାପତିଙ୍କ ସ୍ଥାନ ଅତି ଉଚ୍ଚରେ । ତାଙ୍କ ପ୍ରାସାଦିକ ପଦାବଳୀ ଅସଂସ୍କୃତ ଓ କଥିତ ଲୋକକଥିତ ଲଳିତ-ସୁନ୍ଦର ଭାଷାରେ ବିରଚିତ ବୋଲି କେହି ଯେପରି ମନେ ନ କରନ୍ତି ଯେ ସେ ସଂସ୍କୃତର ସଂସ୍ପର୍ଶରେ ଆସି ନ ଥିଲେ । ବସ୍ତୁତଃ ବିଦ୍ୟାପତିଙ୍କ ତୁଳ୍ୟ ଧୁରନ୍ଧର ସଂସ୍କୃତ-ପଣ୍ଡିତ ପ୍ରାଚୀନ ଓ ଅର୍ବାଚୀନ ଭାରତ ବର୍ଷରେ ଏକାନ୍ତ ବିରଳ । ତାଙ୍କ ଦ୍ୱାରା ସୁରଚିତ "ପୁରୁଷ ପରୀକ୍ଷା" "ଦୁର୍ଗାଭକ୍ତି-ତରଙ୍ଗିଣୀ" "ବିବାଦ ସାର" "ଦାନ ବାକ୍ୟାବଳୀ" ଓ "ଗୟା ପତ୍ତନ" ପ୍ରଭୃତି ବାଣୀଭିତ୍ତି ସଂସ୍କୃତ ଗ୍ରନ୍ଥମାଳା ଅଦ୍ୟାପି ସୁଲଭ୍ୟ ଓ ସୁପ୍ରଶଂସିତ, ଯେ ହେତୁ ସେ ଶାଶ୍ୱତ-ଯୁଗ-ସାହିତ୍ୟ ନିର୍ମାତା ।

ମହାପ୍ରଭୁ ଚୈତନ୍ୟଙ୍କ ପୁଣ୍ୟାବିର୍ଭାବ ପୂର୍ବରୁ ଯେଉଁ ମହାପୁରୁଷ ମାନଙ୍କ ପଦାବଳୀ, ଧାର୍ମିକ, ବୈଷ୍ଣବ ଓ ବାଣୀ-ଉପାସକ-ବୃନ୍ଦ ତଥା ଭାରତର ବିଭିନ୍ନ ଅଞ୍ଚଳର ଜନତା-ଜନାର୍ଦ୍ଦନ ଭକ୍ତି-ତଦ୍‌ଗତ-ପ୍ରାଣରେ ଗାୟନ କରୁଥିଲେ, ସେମାନଙ୍କ ମଧ୍ୟରେ ଉତ୍କଳୀୟ ଜୟଦେବ ଓ ମୈଥିଳ ବିଦ୍ୟାପତି ସର୍ବାଗ୍ରଗଣ୍ୟ । ଜୟଦେବଙ୍କ କୃତି ବିଶୁଦ୍ଧ-ସଂସ୍କୃତ ଗର୍ଭା, କିନ୍ତୁ ବିଦ୍ୟାପତି ସଂସ୍କୃତାତିରିକ୍ତ ଦେଶଜ ଲୋକକଥିତ ଭାଷାର ପଦକର୍ତ୍ତା । ତାଙ୍କ ଶେଷୋକ୍ତ ରଚନାବଳୀ ଏତେ ଭକ୍ତିରସାଶ୍ରିତ ଓ ମାଧୁରୀବିମଣ୍ଡିତ ଯେ ସଂସ୍କୃତଜ୍ଞ ବିଦ୍ୱାନ୍ ଶ୍ରେଣୀ ସଂସ୍କୃତରେ ସେ ଗୁଡ଼ିକର ଟୀକା ଓ ଭାଷ୍ୟ ରଚନା କରି ଧନ୍ୟ ହୋଇ ଅଛନ୍ତି । ବୋଧହୁଏ ଅନ୍ୟ କୌଣସି ଭାରତୀୟ କବିସତ୍ତମଙ୍କ ଭାଗ୍ୟରେ ଏଭଳି ଗୌରବ ଲାଭ ଅଦ୍ୟାବଧି ଘଟି ପାରିନାହିଁ ।

ବିଦ୍ୟାପତି ଚତୁର୍ଦ୍ଦଶ ଶତାବ୍ଦୀର ଶେଷାଂଶରେ ଜନ୍ମ ପରିଗ୍ରହ କରିଥିଲେ । ତାହାଙ୍କ ପିତୃଦେବ ସୁପଣ୍ଡିତ ଦେବସିଂହ ଓ ମାତୃଦେବୀ ସାଧ୍ୱୀରତ୍ନୋତ୍ତମା ହାସିନୀ ଦେବୀ । ଶୈଶବରୁ ବିଦ୍ୟାପତିଙ୍କ କବିତା ରଚନା ପାଟବ ଜନମନ-ହରଣ କରିଥିଲା । ତାହାଙ୍କ ଯୌବନୋପକ୍ରମ କାଳରେ ତତ୍କାଳୀନ ଗୁଣଗ୍ରାହୀ ମିଥିଳେଶ ଶିବସିଂହ ତାଙ୍କ କବି-ପ୍ରତିଭାରେ ଏକାନ୍ତ ବିମୁଗ୍ଧ ହୋଇ ତାଙ୍କୁ ନଦୀମାତୃକ ସାରସ୍ୟ ସରୋବର ସୀମନ୍ତ

ନାମକ ମହାଗ୍ରାମ ଦାନ କରିଥିଲେ । ଅଦ୍ୟାପି ଏହି ସ୍ଥାନରେ ଉତ୍ତରାଧିକାର ସୂତ୍ରରେ ସମ୍ପଦଭୋଗୀ ଉପାଧ୍ୟ ବଂଶଧରବୃନ୍ଦ ବିରାଜମାନ । ବିଦ୍ୟାପତି ମିଥିଳାର ଠାକୁର ପଦବୀଧାରୀ ଉଚ୍ଚତମ ବ୍ରାହ୍ମଣ-କୁଳ-ସମ୍ଭୂତ ଏବଂ ମିଥିଳା, ପଞ୍ଚଗୌଡ଼ାନ୍ତର୍ଗତ ପ୍ରଧାନ ପ୍ରସିଦ୍ଧ ଭୂମି । ସ୍କନ୍ଦପୁରାଣରେ ନିମ୍ନୋକ୍ତ ବହୁଳୋଦ୍ଧୃତ ବଚନ ଏହି ଭୂମିକୁ ଉତ୍କଳଭୂମିର ସମପର୍ଯ୍ୟାୟ-ଭୁକ୍ତ କରଉଛି, ଯେହେତୁ ଉତ୍କଳ ମଧ୍ୟ ପଞ୍ଚଗୌଡ଼ାନ୍ତର୍ଗତ ପ୍ରଖ୍ୟାତ ପୁଣ୍ୟସ୍ଥଳୀ—

ସାରସ୍ୱତାଃ କାନ୍ୟକୁବ୍‌ଜାଃ ଗୌଡମୈଥିଲଉତ୍କଳାଃ
ପଞ୍ଚଗୌଡା ଇତଖ୍ୟାତା ବିନ୍ଧ୍ୟସ୍ୟୋତ୍ତରବାସିନଃ ।

କହିବା ବାହୁଲ୍ୟ ଯେ, ଉପର୍ଯ୍ୟୁକ୍ତ ବଚନାନୁଯାୟୀ ପଞ୍ଚଗୌଡ଼ର ପରିସର ମଧ୍ୟରେ ବଙ୍ଗର ସ୍ଥାନ ନାହିଁ, ଯଦି ଚ ଅଧୁନାତନ ବଙ୍ଗର ବହୁ ଅଞ୍ଚଳ ବିଦ୍ୟାପତିଙ୍କ କାଳରେ ଉତ୍କଳୀୟ ସ୍ୱାଧୀନ ନରପତିମାନଙ୍କ ବଶ୍ୟତା ସ୍ୱୀକାର ପୂର୍ବକ ଗୌଡ଼ାନ୍ତର୍ଗତ ହୋଇ ରହିଥିଲା । ଯାହା ହେଉ, ଏ ପ୍ରସଙ୍ଗ ଅବତାରଣାର ଅଭିପ୍ରାୟ କେବଳ ଏହା ହିଁ ଯେ, ଉତ୍କଳ ଓ ମିଥିଳା ଏକ ନାମ ନାମିତ ଭୂଖଣ୍ଡର ଅନ୍ତର୍ଭାବ ନିବନ୍ଧନ ବହୁବିଷୟରେ ସମ-ଭାଷା-ଭାଷୀ ଓ ସମସଂସ୍କୃତ ଓ କୃଷ୍ଟିୟୈକ୍ୟଯୁକ୍ତ ହୋଇଥିବାର ପ୍ରମାଣ ଅବଶ୍ୟ ପ୍ରାପ୍ତବ୍ୟ । ଏହି ପ୍ରମାଣ-ପ୍ରାପ୍ତି ନିମିତ୍ତ ସବିଶେଷ ଗବେଷଣା କୌଣସି ଆବଶ୍ୟକ ନୁହେଁ, ଯେହେତୁ ବିଦ୍ୟାପତିଙ୍କ କୋମଳ-କାନ୍ତ-ପଦାବଳୀ ହିଁ ଏହାର ପ୍ରକୃଷ୍ଟ ସାକ୍ଷ୍ୟ । ପାଠକମାନେ ଏହି ପଦାବଳୀ ମଧ୍ୟରେ ଶତ ଶତ ଓଡ଼ିଆ ଶବ୍ଦ, ବା ଓଡ଼ିଆର ଯତ୍‌ସାମାନ୍ୟ ଅପଭ୍ରଂଶଯୁକ୍ତ ବୋଲି ଦେଖି ଏପରିକି 'ଦେବ' 'ନେବ' ଭଳିଆ ଓଡ଼ିଶା କ୍ରିୟା ପଦର ଅବିକୃତ ପ୍ରୟୋଗ ସନ୍ଦର୍ଶନ କରି ବିସ୍ମିତ ହେବେ । 'ପଇଡ' ଯେ ଯାହା ଓଡ଼ିଆରେ ଏକାନ୍ତ ନିଜସ୍ୱ ବୋଲି ଏ ଯାବତ୍ ଲେଖକଙ୍କର ଧାରଣା ଥିଲା, ତାହା ଯେ ଭ୍ରାନ୍ତ-ପ୍ରସୂତ, ବିଦ୍ୟାପତିଙ୍କ ରଚନାସ୍ଥ "ପେଡ" ହେତୁ ପ୍ରତୀତ ହୋଇ ପାରୁଛି । ବିଦ୍ୟାପତିଙ୍କ ମିଥିଳା, ନ୍ୟାୟଶାସ୍ତ୍ର ଚର୍ଚ୍ଚାର ବୃହତ୍ତମ ବିଦ୍ୟାପୀଠ ରୂପରେ ସୁପରିଚିତ ଥିବାରୁ ଭାରତର ବିଭିନ୍ନାଞ୍ଚଳରୁ, ବିଶେଷତଃ ବଙ୍ଗଭୂମିରୁ ବିଦ୍ୟାର୍ଥୀ-ବୃନ୍ଦ ଶତ ଶତ ସଂଖ୍ୟାରେ ସେଠାକୁ ଯାଉଥିଲେ । ବଙ୍ଗାଳୀ ଜାତି ବହୁକାଳ-ବ୍ୟାପୀ ଚେଷ୍ଟା ଚଳାଇ, ବିଶ୍ୱସମକ୍ଷରେ ପରିଚିତ କରିବାର ବ୍ୟର୍ଥଚେଷ୍ଟା

କରିପାରନ୍ତି । ବସ୍ତୁତଃ ମୂଳ ମୈଥିଳ ଭାଷାର ବିଦ୍ୟାପତି ପଦାବଳୀର ବିକାର ସମ୍ପାଦନ ମଧ୍ୟ ଏହି ପ୍ରୟାସ ନିବନ୍ଧନ ଅନେକ ପରିମାଣରେ ଘଟିଛି । ପାଠକ-ବୃନ୍ଦ ପଠନ-ପାଠବେଳରେ ସବୁ ବୁଝିନେବେ । ଏପରି ବଙ୍ଗୀକୃତ ଅବାଞ୍ଛନୀୟ ଅବସ୍ଥା ପ୍ରାପ୍ତି ଅବଶ୍ୟ ଏହି ପଦାବଳୀର ସ୍ୱଳ୍ପ ସଂଖ୍ୟକ ପଦରେହିଁ ଘଟିଛି, ଯେହେତୁ ଲେଖକ କାଳୀ-ପ୍ରସନ୍ନ କାବ୍ୟବିଶାରଦ ମହାଶୟଙ୍କ "ବିଦ୍ୟାପତି" ନାମକ ସଂଗ୍ରହ ତଥା ଅପରାପର ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂଗ୍ରାହକ ପ୍ରବରଙ୍କ ଗ୍ରନ୍ଥର ତୁଳନାତ୍ମକ ଅଧ୍ୟୟନାନନ୍ତର ମୂଳ ପାଠାବଳୀର ନିର୍ଣ୍ଣୟ କରିଛି । କାବ୍ୟ-ବିଶାରଦ-ମହାଶୟ ବିଦ୍ୟାପତିଙ୍କ ପରିଚୟ ନିମ୍ନୋକ୍ତ ଭାବରେ ଦେଇଛନ୍ତି—

"ବିଦ୍ୟାପତିଙ୍କ ଶକ୍ତିସମନ୍ୱୟ ଅପରିସୀମ । ତାଙ୍କ କବିତା ଅଳଙ୍କାର-ଭୂଷିତା, ହୃଦୟ-ଗ୍ରାହିଣୀ, ଶିଳ୍ପ-କୁସୁମ-କୁନ୍ତଳା, କଳ୍ପନା-ରଥରେ ଆରୋହଣ କରି କଳ୍ପନାର ଏହି ପ୍ରିୟ ପୁତ୍ରୀ ଦେଶରୁ ଦେଶାନ୍ତର, ମର୍ତ୍ତ୍ୟରୁ ସ୍ୱର୍ଗ ପର୍ଯ୍ୟନ୍ତ ପରିଭ୍ରମଣ କରିଛନ୍ତି । ସେଠାରୁ ଅମୃତାୟମାନ ବଚନ ପରମ୍ପରା ଓ ଭାବରାଶି ସଂଗ୍ରହ କରିଛନ୍ତି । ଶ୍ରବଣ କଲେ ହୃଦୟର ତନ୍ତ୍ରୀ ସ୍ୱତଃ ବିମୁଗ୍ଧ ହୋଇଯାଏ । କଳ୍ପନା-ସୁନ୍ଦରୀ ତାଙ୍କ ପ୍ରକୃତିର ଯେଉଁ ମାନଚିତ୍ର ଦେଖାଇଛନ୍ତି,—ତାଙ୍କ କବିତାର ପ୍ରତିଛତ୍ରରେ ତାର ଉଜ୍ଜ୍ୱଳ-ଦୃଷ୍ଟାନ୍ତ ବିଭାସିତ ରହିଛି ।"

ବାସ୍ତବରେ ଉପର୍ଯ୍ୟୁକ୍ତ କଥନରେ ଅଣୁମାତ୍ର ଅତିରଞ୍ଜନ ନାହିଁ । ପଦାବଳୀର ସ୍ଥାନେ ସ୍ଥାନେ ଆଦି-ରସ ପ୍ରାଚୁର୍ଯ୍ୟ ଦେଖି ଏହାକୁ ଆଧୁନିକରୁଚି-ବିଗର୍ହିତ ଓ ଅଶ୍ଳୀଳ ବୋଲି କେହି କେହି ନାସିକା-କୁଞ୍ଚନ କରିପାରନ୍ତି । ମୁଁ ଏ ଶ୍ରେଣୀର ପାଠକ-ବୃନ୍ଦଙ୍କୁ ଭକ୍ତ ବୈଷ୍ଣବର ପରମପବିତ୍ର ଭାବ-ସମ୍ପଦର ଅଧିକାରୀ ହେବାକୁ ପ୍ରାର୍ଥନା କରିବି । ଉତ୍କଳୀୟ ଅମର ଯଶା, ଅଭିମନ୍ୟୁ ସାମନ୍ତ ସିଂହାର, କବିସୂର୍ଯ୍ୟ ଓ ଗୋପାଳ କୃଷ୍ଣଙ୍କ ସୁଧାନିଷ୍ୟନ୍ଦିନୀ କବିତାବଳୀ ଯେଉଁ ପୁଣ୍ୟ ପର୍ଯ୍ୟାୟଭୁକ୍ତ, ବିଦ୍ୟାପତିଙ୍କ ଅମୃତାକର କଦାପି ତହିଁରୁ ବାହାର ନୁହେଁ । ରାଧାକୃଷ୍ଣଙ୍କ ଦେବଦୁର୍ଲଭ ମିଳନ ଜାଗତିକ ପଙ୍କିଳତାର ସଙ୍କୀର୍ଣ୍ଣ ପରିସୀମା ମଧ୍ୟରେ ଆବଦ୍ଧ ନୁହେ । ସୁତରାଂ, ମୁଁ ସମ୍ପୂର୍ଣ୍ଣ ନିଃସଙ୍ଗ ରୂପରେ ଏକଥା ଜଣାଇବା କର୍ତ୍ତବ୍ୟ ମନେ କରେ ଯେ ଏହି ପଦାବଳୀ ପଠନ-ପ୍ରସୂତ ବିଶୁଦ୍ଧ ଆନନ୍ଦ କାହାରିକି ଅଶ୍ଳୀଳତାର ଗହ୍ୱର ମଧ୍ୟକୁ ଟାଣି ନେଇ ନ ପାରେ, ଯେହେତୁ ଅନାବିଳ

ଭକ୍ତାନ୍ତରର ଏହି ବାଣୀ ପରମ୍ପରାରୁ ଭକ୍ତ ଓ ତୃପ୍ତି ହିଁ ଏକାନ୍ତ, ସହଜ ଲଭ୍ୟ । 'ବିଦ୍ୟାପତି ପଦାବଳୀ' କାବ୍ୟର ଶୀର୍ଣ୍ଣ ପରିସୀମା ମଧ୍ୟରେ ସମ୍ପାଦିତ । ସୁତରାଂ ଭ୍ରମ-ପ୍ରମାଦ ନିରାକରଣାର୍ଥ ଅତି ପ୍ରୟୋଜନୀୟ ସାମଗ୍ରୀ-ନିଚୟର ଏକାନ୍ତ ଅଭାବ ମଧ୍ୟରେ ହିଁ ଏହା ରୂପାୟିତ । ଆଶାକରେ ହରିକଥା-ସୁରସିକ ଓ କଳାମୋଦୀ ପାଠକ-ସମ୍ପ୍ରଦାୟ ବହିତ ସଦାଗ୍ରହ ଦ୍ୱାରା ଏହାର ସଂସ୍କରଣାନ୍ତର ପ୍ରକାଶରେ ଆଶୁ ସମ୍ଭାବନା ଘଟାଇବେ ଏବଂ ତେତେବେଳେ ମାର୍ଜିତତର ଅଙ୍ଗ-ପ୍ରକାଶ ଦ୍ୱାରା ଏହା ଅଧିକତର ଜନ-ରଞ୍ଜନର କ୍ଷମତା-ପ୍ରସାର କରି ପାରିବ ।

ଯେଉଁ ପରମପିତାଙ୍କ ନାମୋଚ୍ଚାରଣ ପୂର୍ବକ ଏହି ପୁଣ୍ୟ ପ୍ରଚେଷ୍ଟାର ସୂତ୍ର-ପତନ କରିଥିଲି, ତାଙ୍କର ଅନୁପମ କରୁଣାଧାରା ପ୍ରତି ସକୃତଜ୍ଞ ଶ୍ରଦ୍ଧା ଓ ଆସ୍ଥା ଜ୍ଞାପନ ପୂର୍ବକ ଏହାର ଉଦ୍‌ଯାପନ କଲି । ଇତି ।

ଲକ୍ଷ୍ମୀନାରାୟଣ ମିଶ୍ର

ତା ୫ । ୫ । ୯୫

---

# ବିଦ୍ୟାପତି-ପଦାବଳୀ

## ଶ୍ରୀକୃଷ୍ଣଙ୍କ ପୂର୍ବରାଗ

ଗେଲି କାମିନି ଗଜହୁ ଗାମିନି ବିହସି ପଲଟି ନିହାରି
ଇନ୍ଦ୍ର ଜାଲକ କୁସୁମ-ସାୟକ କୁହକି ଭେଲି ବର ନାରୀ । ୧
ଜୋରି ଭୁଜଯୁଗ ମୋରି ବେଢ଼ଲ ତତହି ବଦନ ସୁଛନ୍ଦ
ଦାମ-ଚମ୍ପକ କାମ ପୂଜଲ ଜଇସେ ସରଦା ଚନ୍ଦ । ୨
ଉରହି ଅଞ୍ଚଲ ଝାଂପି ଚଞ୍ଚଲ ଆଧ ପୟୋଧର ହେରୁ
ପୌନ ପରାଭବ ସରଦ ଘନ ଜନି ବେକତ କଏଲ ସୁମେରୁ । ୩
ପୁନହି ଦରସନ ଜୀବ ଜୁଡ଼ାୟବ ଟୁଟତ ବିରହକ ଓର
ଚରଣ ଯାବକ ହୃଦୟ ପାବକ ଦହଇ ସବ ଅଙ୍ଗ ମୋର । ୪
ଭନ ବିଦ୍ୟାପତି ସୁନହ ଯଦୁପତି ଚିତ ଥିର ନହି ହୋୟ
ସେ ଯେ ରମନି ପରମ ଗୁନମନି ପୁନ କଏ ମିଲବ ତୋୟ । ୫

ଅର୍ଥ— ଗଜଗାମିନୀ କାମିନୀ ଚାଲି ଯାଉଁ ଯାଉଁ ପଛକୁ ଲେଉଟି ଚାହିଁଲେ ଓ ହସିଦେଲେ । ସେହି ସୁନ୍ଦରୀ (ଶ୍ରୀରାଧା) ଐନ୍ଦ୍ରଜାଲିକ କାମଦେବଙ୍କ ପକ୍ଷରେ ମଧ୍ୟ କୁହୁକିନୀ ପ୍ରାୟ ହେଲେ ।୧। କରଦ୍ୱୟକୁ ଏକତ୍ର ସମ୍ମିଳିତକରି ଓ ମୋଡ଼ି, ତହିଁରେ ସେ ସୁନ୍ଦରୀ ନିଜ ମୁଖକୁ ବେଷ୍ଟନକଲେ । (ସେହି ଦୃଶ୍ୟ ଏପରି ଜଣାଗଲା) ଯେପରି କାମଦେବ ଚମ୍ପକ ଦାମରେ ଶରଚ୍ଚନ୍ଦ୍ରଙ୍କ ପୂଜା କରୁଛନ୍ତି ।୨। ଚଞ୍ଚଳଭାବରେ ବକ୍ଷ-ସ୍ଥଳକୁ ଅଞ୍ଚଳଦ୍ୱାରା ଆଚ୍ଛାଦନ କରିବାରୁ, ସ୍ତନର ଅର୍ଦ୍ଧଭାଗମାନ ଦେଖାଗଲା । ବୋଧହେଲା, ଯେପରି ଶରତ୍‌କାଳୀନ ମେଘ ପବନଦ୍ୱାରା ପରାଭୂତ ହୋଇ (ଅସ୍ପଷ୍ଟ ଭାବରେ) ସୁମେରୁ ପର୍ବତକୁ ବ୍ୟକ୍ତ (ପ୍ରକାଶ) କରୁଅଛି ।୩। ପୁନର୍ଦର୍ଶନ ଦ୍ୱାରାହିଁ ମୋ ଜୀବନ ଶୀତଳ ହେବ ଓ ବିରହର ସୀମା ମଧ୍ୟ

ସମାପ୍ତ ହେବ । ସୁନ୍ଦରୀର ଚରଣଲଗ୍ନ ଅଳକ୍ତକ ଚନ୍ଦ୍ର-ରୂପକ ଅଗ୍ନି ମୋର ସର୍ବାଙ୍ଗ ଦଗ୍ଧ କରୁଛି ।୪। ବିଦ୍ୟାପତି କବି ଏଠାରେ ନାୟକଙ୍କ ସହିତ ଅଭିନ୍ନ ଭାବରେ ସଖୀଙ୍କୁ ସମ୍ବୋଧନ ପୂର୍ବକ କହୁଛନ୍ତି, ହେ ରମଣି ! ତୁମ୍ଭେ ଗୁଣବତୀ କିନ୍ତୁ ମୁଁ ନିର୍ଗୁଣ (ଗୁଣହୀନ), ଏଣୁ କିପରି ତୁମକୁ ପାଇବାକୁ ଆଶା କରିବି ? ହେ ଯୁବତି ଶ୍ରବଣକର, ମୋର ଚିତ୍ତ ସ୍ଥିର ହେଉନାହିଁ ।୫।

* * *

( ୨ )

ସଜନି, ଅପରୂପ ପେଖଲ ରାମା
କନକଲତା ଅବଲମ୍ବନ ଉୟଲ
ହରିଣ-ହୀନ ହିମ ଧାମା ।୧।
ନୟନ-ନଳିନ ଦଉ ଅଞ୍ଜନ ରଞ୍ଜଇ
ଭୌଂହ ବିଭଙ୍ଗ ବିଲାସା
ଚକିତ-ଚକୋର ଜୋର ବିଧି ବାନ୍ଧଲ
କେବଲ କାଜଲ ପାସା ।୨।
ଗିରିବର ଗରୁଅ ପୟୋଧର ପରସିତ
ଗିମ ଗଜ-ମୋତିକ ହାରା
କାମ କମ୍ବୁ ଭରି କନକ ସମ୍ଭୁ ପରି
ଢାରତ ସୁରସରି ଧାରା ।୩।
ପୟସି ପୟାଗ ଜାଗ ସତ ଜାଗଇ
ସୋଇ ପାବଏ ବହୁଭାଗୀ
ବିଦ୍ୟାପତି କହ ଗୋକୁଲ ନାୟକ
ଗୋପୀ ଜନ ଅନୁରାଗୀ ।୪।

ଅର୍ଥ—ଆଜି ମୁଁ ଗୋଟିଏ ଅପୂର୍ବ ସୁନ୍ଦରୀ ଦେଖିଲି । ତାକୁ ଦେଖି ଏପରି ମନେହେଲା, ଯେପରି କନକଲତାକୁ ଅବଲମ୍ବନକରି ନିଷ୍କଳଙ୍କ ଶଶୀ ଉଦିତ ହେଉଅଛି । (ଏଠାରେ ଦେହସହିତ କନକଲତାର ଓ ମୁଖ ସହିତ ନିଷ୍କଳଙ୍କ ଚନ୍ଦ୍ରର ସାଦୃଶ୍ୟ ନିର୍ଦ୍ଦେଶ କରା ଯାଇଛି) ।୧। ଭ୍ରୂଭଙ୍ଗୀର ବିଳାସସ୍ଥଳ ସ୍ୱରୂପ, (ଅଥବା ଅନୁରାଗ ତରଙ୍ଗର ଲୀଳାସ୍ଥଳ ସଦୃଶ, କିମ୍ବା ହାବଭଙ୍ଗୀର ବିଲାସକ୍ଷେତ୍ର ତୁଲ୍ୟ) କମଳ-ନୟନ ଯୁଗଳ

ଅଞ୍ଜନରେ ରଞ୍ଜିତ ହୋଇ ରହିଛି । (ଦେଖିଲେ ପ୍ରତୀତହୁଏ) ବିଧାତା ଚକିତ (ଭୀତ) ଏଣୁ ପଳାୟନୋଦ୍ୟତ ଓ ଚଞ୍ଚଳ ଚକୋର-ଯୁଗଳକୁ କେବଳ କଜ୍ଜଳ-ରେଖାରୂପ ପାଶଦ୍ୱାରା ବାନ୍ଧି ରଖିଛନ୍ତି ।୨। ସେହି ସୁନ୍ଦରୀର ଗଳଦେଶରେ ବିଲମ୍ବିତ ଗଜମୁକ୍ତାହାର ଗିରିବର ତୁଲ୍ୟ ଉତ୍ତୁଙ୍ଗ ପୟୋଧରଙ୍କୁ ସ୍ପର୍ଶ କରୁଅଛି । (ଦେଖିଲେ ବୋଧହୁଏ ଯେପରି ଶଙ୍କୁ ପୂର୍ଣ୍ଣ କରି ସୁବର୍ଣ୍ଣମୟ ଶିବଲିଙ୍ଗ ଉପରେ ଗଙ୍ଗାର ଜଳଧାରକୁ ବର୍ଷଣ କରୁଛନ୍ତି । ) ଏହି ରୂପକରେ କଣ୍ଠ କମ୍ବୁ, ପୟୋଧର ଶମ୍ଭୁ, ଓ ଗଜ-ମୁକ୍ତାହାର ଗଙ୍ଗାଜଳଧାର ରୂପେ ଉପମିତ ହୋଇଛି । ଯେ ପ୍ରୟାଗତୀର୍ଥକୁ ଯାଇ ଶତ ଶତ ଯଜ୍ଞ କରେ ସେହିପରି ବିଶେଷ ଭାଗ୍ୟଶାଳୀ ପୁରୁଷ ଏପରି ରମଣୀରତ୍ନକୁ ପ୍ରାପ୍ତ କରିବାପାଇଁ ଯୋଗ୍ୟ । ବିଦ୍ୟାପତି କହୁଛନ୍ତି, ହେ ଗୋକୁଳନାୟକ ! ହେ ଗୋପୀଜନ ଅନୁରାଗୀ ! ସେହି ସୁନ୍ଦରୀକୁ ଅନ୍ୟ କେହି ପ୍ରାପ୍ତକରି ନ ପାରେ ।୪।

ବିଦ୍ୟାପତିଙ୍କ 'ଗୀତଚିନ୍ତାମଣି' ନାମକ ଗ୍ରନ୍ଥରେ ଏହି ପଦାବଳୀ ମଧ୍ୟରେ ଅଧିକ କେତେଟି ଚରଣ ସନ୍ନିବେଶିତ ହୋଇଅଛି ଯଥା—

"ପ୍ରଥମ ବୟସ ଧନି ମୁନି-ମନ ମୋହନୀ
ଗଜବର ଜିନି ଗତିମନ୍ଦା
ସିନ୍ଦୂର ତିଳକ ଭାନୁ ତଡ଼ିତ ଲତା ଜନୁ
ଉପର ପୁନମିକ ଚନ୍ଦା"

ଏହି ଚରଣ ଚତୁଷ୍ଟୟର ପାରଲୀ ଦୃଷ୍ଟିରୁ ଟୀକାର ପ୍ରୟୋଜନୀୟତା ଉପଲବ୍ଧ ହେଉନାହିଁ ।

---

( ୩ )

କବରୀ ଭୟେ ଚାମରୀ ଗିରି-କନ୍ଦରେ
ମୁଖ ଭୟୁ ଚାନ୍ଦ ଅକାଶେ
ହରିଣୀ ନୟନ-ଭୟୁ ସ୍ୱର-ଭୟୁ କୋକିଳ
ଗତିଭୟେ ଗଜ-ବନବାସେ ।୧।
ସୁନ୍ଦରି କାହେ ମୋହି ସଂଭାଷି ନ ଯାସି
ଭୁଅ ଭୟୁ ଛହସବ ଦୂରହି ପଲାଏଲ
ତୁହୁ ପୁନ କାହି ଡରସି ।୨।

କୁଚଭୟ କମଲ-କୋରକ     ଜଲ ମୁଦି ରହୁ
ଘଟ ପରବେଶ ହୁତାସେ
ଦାଡ଼ିମ ସିରିଫଲ     ଗଗନେ ବାସ କରୁ
ସମ୍ଭୁ ଗରଲ କରୁ ଗ୍ରାସେ ।୩।
ଭୁଜ-ଭୟ ପଂକ     ମୃଣାଲ ନୁକାୟଲ
କର-ଭୟ କିସଲୟ କାଁପେ
ବିଦ୍ୟାପତି କହ     କତ କତ ଐସନ
କହବ ମଦନ ପରତାପେ ।୪।

ଅର୍ଥ—ତୋର କେଶ ପାଶର ଭୟରେ ଚମରୀଗାଈ ପର୍ବତକନ୍ଦରାକୁ ଚଳି ଯାଇଅଛି । ମୁଖଭୟରେ ଚନ୍ଦ୍ରମା ଆକାଶଗାମୀ ହୋଇଅଛି । ନୟନ ଭୟରେ ହରିଣୀ, ସ୍ୱର ଭୟରେ କୋକିଳ ଓ ଗତିଭୟରେ ଗଜେନ୍ଦ୍ର ବନବାସୀ ହୋଇଛନ୍ତି ।୧। ହେ ସୁନ୍ଦରି ! କେଉଁ କାରଣରୁ ମୋ ସହିତ ସମ୍ଭାଷଣ କରୁ ନାହିଁ । ପୂର୍ବୋକ୍ତ ସମସ୍ତ ପଶୁ ଓ ପକ୍ଷୀ ତୁମ୍ଭ ଭୟରେ ଦୂରକୁ ପଳାଇଲେ । ତୁମେ ପୁଣି ବର୍ତ୍ତମାନ କାହାକୁ ଭୟ କରୁଛ ।୨। ତୋର କୁଚ ଭୟରେ କମଳ-କୋରକ (ପଦ୍ମକଳିକା) ଜଳ ମଧ୍ୟରେ ମୁଦ୍ରିତ ହୋଇ ରହିଥାଏ । ଘଟ ଅଗ୍ନିରେ ପ୍ରବେଶକରେ, ଡାଳିମ୍ବ ଫଳ ଓ ଶ୍ରୀଫଳ (ବେଲ) ଗଗନରେ ବାସ କରେ, ତଥା ଶମ୍ଭୁ ମଧ୍ୟ ଗରଳପାନ କରନ୍ତି ।୩। ତୋ ଭୁଜଭୟରେ କମଳ-ମୃଣାଳ ପଙ୍କରେ ଲୁଚି ରହେ ଓ ପାପୁଲିଭୟରେ କିଶଳୟ (କୋମଳ ପଲ୍ଲବ) ସର୍ବଦା କମ୍ପିତ ହେଉଥାଏ । କବି ବିଦ୍ୟାପତି କହୁଛନ୍ତି—ଏହିପରି ମଦନପରିତାପରେ କେତେକେତେ ପ୍ରଳାପ କରିବ ।୪।

———

( ୪ )

ସୁଧାମୁଖି କୋ ବିହି ନିରମିଲ ବାଲା
ଅପରୁବ ରୂପ     ମନୋଭବ ମଙ୍ଗଲ
ତିଭୁବନ ବିଜୟୀ ମାଲା ।୧।
ସୁନ୍ଦର ବଦନ     ଚାରୁ ଅରୁ ଲୋଚନ
କାଜର ରଂଜିତ ଭେଲା
କନକ-କମଲ ମାଝ     କାଲ ଭୁଜଂଗିନୀ ।
ଶ୍ରୀଯୁତ ଖଂଜନ ଖେଲା ।୨।

ନାଭି ବିବର ସଯୁଁ  ଲୋମ ଲତାବଲି
ଭୁଜଗି ନିଶ୍ୱାସ ପିୟାସା
ନାସା ଖଗପତି  ଚଞ୍ଚୁ ଭରମ ଭୟୁ
କୁଚଗିରି ସନ୍ଧି ନିବାସା ।୩।
ତିନି ବାନେ ମଦନ  ଜିତଲ ତିନ ଭୁବନ
ଅବଧି ରହଲ ଦଓ ବାନେ
ବିଧି ବଡ଼ ଦାରୁଣ  ବଁଧିତେ ରସିକ ଜନ
ସୌଂପଲ ତୋହାର ନୟାନେ ।୪।
ଭନଇ ବିଦ୍ୟାପତି  ସୁନୁ ବର ଜୌବତି
ଇହ ରସ କୋ ପୟେ ଜାନେ
ରାଜା ଶିବସିଂଘ  ରୂପ ନରାୟନ
ଲଖିମା ଦେଇ ପରମାନେ ।୫।

ଅର୍ଥ—କେଉଁ ବିଧାତା ତୁମପରି ଚନ୍ଦ୍ରମୁଖୀ ବାଳାକୁ ନିର୍ମାଣ କରିଅଛି । ତୁମେ ତ ଅପୂର୍ବ ରୂପସମ୍ପନ୍ନା, କାମଦେବଙ୍କ ଶୁଭଦାୟିକା, ଓ ତ୍ରିଭୁବନ ଜୟକାରିଣୀ ମାଳା ସଦୃଶୀ ସୁଶୋଭିତା ହେଉଅଛ ।୧। ମନୋହର ମୁଖରେ କଜ୍ଜଳରଞ୍ଜିତ ମଞ୍ଜୁଳ ନେତ୍ର ସୁଶୋଭିତ ହେଉଅଛି । ଯେପରି, କନକ-କମଳ (ମୁଖ)ର ମଧ୍ୟସ୍ଥଳରେ କାଳଭୁଜଙ୍ଗୀର କାନ୍ତି ସଦୃଶ ଖଞ୍ଜନ ଖେଳୁଅଛି । ଏଠାରେ ମୁଖ-କନକ କମଳ, ନେତ୍ର-ଖଞ୍ଜନ ଓ ଅଞ୍ଜନରେଖା କାଳଭୁଜଙ୍ଗିମାର ଶୋଭା ସହିତ ତୁଳନା କରା ଯାଇଛନ୍ତି ।୨। ନାଭିରୂପ ବିବରରୁ ଲୋମଲତାବଳୀରୂପ ଭୁଜଙ୍ଗୀ; ସୁଗନ୍ଧିତ ନିଃଶ୍ୱାସରୂପ ବାୟୁକୁ ପାନ କରିବା ଇଚ୍ଛାରେ ନିର୍ଗତ ହେଲା, କିନ୍ତୁ ନାସିକାକୁ ଦେଖି ଗରୁଡ଼ର ଚଞ୍ଚୁ ବୋଲି ଭ୍ରାନ୍ତ ହେବାରୁ, ତନ୍ନିକଟ ଉପରେ କୁଚଗିରିଦ୍ୱୟ ମଧ୍ୟବର୍ତ୍ତୀ ଗହ୍ୱରରେ ବାସ କରିବାକୁ ଲଗିଲା । (ନାସିକା ପର୍ଯ୍ୟନ୍ତ ଅଗ୍ରସର ହୋଇପାରିଲା ନାହିଁ) ଭୁଜଙ୍ଗମାନେ ପବନାଶୀ, ତେଣୁ ଲୋମାବଳୀରୂପ ସର୍ପ କବିଙ୍କ ଦୃଷ୍ଟିରେ ନିଶ୍ୱାସରୂପ ପବନପାନରେ ପ୍ରୟାସୀ ହୋଇଛି ।୩। ପଞ୍ଚବାଣ ମଦନ, ତିନିଗୋଟି ବାଣରେ ତ୍ରିଭୁବନ ଜୟ କରିଛନ୍ତି । ଆଉ ଦୁଇଗୋଟି ବାଣ ତାଙ୍କ ପାଖରେ ଅବଶିଷ୍ଟ ଥିଲା । ସେହି (ମୋହନ ଓ ଉନ୍ମାଦନ ନାମକ ଦୁଇଗୋଟି) ବାଣକୁ କଠିନହୃଦୟ ବିଧାତା, ରସିକଜନଙ୍କ ବଧ ନିମିତ୍ତ ତୁମ୍ଭ ନେତ୍ରକୁ ସମର୍ପଣ କରିଅଛି ।୪।

ଭଣିତରେ ବିଦ୍ୟାପତି ନିଜର ଗୁଣଗ୍ରାହକ ରୂପନାରାୟଣ ରାଜା ଶିବସିଂହ ଓ ତାଙ୍କର ମହିଷୀ ଲଖିମା ଦେବୀଙ୍କ ପ୍ରଶସ୍ତି ଗାନ ପୂର୍ବକ କହୁଛନ୍ତି ଯେ ହେ ସୁନ୍ଦରି ! ଶୁଣ, ଏହି ରସର ଆସ୍ୱାଦନ କେହି କେହି କରିପାରନ୍ତି । (ସମସ୍ତେ ସୌନ୍ଦର୍ଯ୍ୟ ରସାସ୍ୱାଦନ କରି ପାରନ୍ତି ନାହିଁ) ଲଖିମାଦେବୀଙ୍କ ସ୍ୱାମୀ ରୂପନାରାୟଣ ରାଜା ଶିବସିଂହଙ୍କୁ ଏହି ରସ ଜଣା ।୪।

( ୪ )

କଏଳୁ ମମ ହଅ ପଡ଼ଲ ଶଶିବଦନା
ନିମିଖ ନେହାରି ରହିଲ ଦୁଅନୟନା ।
ଦାରୁଣ ବଙ୍କ ବିଲୋଚନ ଥୋର
କାଲ ହୋଇ କଏ ଉପଜଲ ମୋର ।୧।

ମାନସ ରହଲ ପୟୋଧର ଲାଗି
ଅନ୍ତରେ ରହଲ ମନୋଭବ ଜାଗି ।
ଶ୍ରବଣ ରହଲ ଐସେ ଶୁନଇତେ ରାବ
ଚଲଇତେ ଗୃହଁ ଚରଣ ନାହିଁ ଜାବ ।୨।

ଆଶା-ପାଶ ନା ତେଜଇ ଅଙ୍ଗ
ବିଦ୍ୟାପତି କହ ପ୍ରେମତରଙ୍ଗ ।୩।

ଅର୍ଥ—ଶଶିବଦନା କାହିଁକି ମୋର ନୟନ ପଥାରୂଢ଼ ହେଲା ? (ତାହାର) ନୟନଯୁଗଳ କେବଳ ନିମିଷକ ପାଇଁ ମୋତେ ଅନାଇଁ ରହିଲା, ଅଧିକସମୟ ପାଇଁ ନୁହେ । ଏପରି ଯଦି ଥିଲା ତେବେ ସେ କାହିଁକି ମୋ ନୟନପଥରେ ପତିତ ହେଲା । ତାହାର ସେହି କ୍ଷଣସ୍ଥାୟୀ, ତୀବ୍ର ଓ କୁଟିଳ ଦୃଷ୍ଟି, ମୋ ପକ୍ଷରେ କାଳ ରୂପେ ଉପସ୍ଥିତ ହେଲା ।୧। ପୟୋଧରରେ ମନ ଲାଗି ରହିଲା, ଅନ୍ତରରେ କନ୍ଦର୍ପ ଜାଗି ରହିଲା । କର୍ଣ୍ଣ ଏହିପରି ସୁସ୍ୱର ଶୁଣିବା ନିମିତ୍ତ ଉତ୍କଣ୍ଠ ହୋଇ ରହିଲା, ମୁଁ ଚାଲିବାକୁ ଚାହୁଁଅଛି କିନ୍ତୁ ମୋର ଚରଣ ଚଳୁନାହିଁ ।୨। କବି ବିଦ୍ୟାପତି ପ୍ରେମତରଙ୍ଗ ବର୍ଣ୍ଣନା ପୂର୍ବକ କହୁଛନ୍ତି ଯେ, ଅଙ୍ଗ ଆଶାର ସମୀପ୍ୟକୁ ପରିତ୍ୟାଗ କରେନାହିଁ ଓ ଆଶା-ବନ୍ଧନ ମଧ୍ୟ ଅଙ୍ଗତ୍ୟାଗ କରେନାହିଁ ।

( ୭ )

ସୁନ୍ଦରି ବଦନେ ସିନ୍ଦୁର ବିନ୍ଦୁ
ସାମର ଚିକୁର ଭାର ।
ଜନି ରବି ଶଶି ସଙ୍ଗହି ଉଗଲ
ପାଛ କଏ ଅନ୍ଧିୟାର ।୧।
ସାମାହେ, ଅଧିକ ଚନ୍ଦିମ ଭେଲ
କତନେ ଜତନେ କତ ଅଦଭୁତ
ବିହି ବିହି ତୋହିଦେଲ ।୨
ଉନତ ଉରୋଜ ଚିର ଝପାବଏ
ପୁନୁ ପୁନୁ ଦରସାଏ
ଜଇସୋ ଜତନେ ଗୋଅଏ ଗୃହ ଏ
ହିମଗିରି ନ ନୁକାଏ ।୩।
ଚଞ୍ଚଳ ଲୋଚନେ ବଙ୍କ ନିହାରଏ
ଅଞ୍ଜନ ସୋଭ ପାୟ
ଜନି ଇନ୍ଦୀବର ପବନେ ପେଲଲ
ଅଲି ଭରେ ଉଲଟାୟ ।୪।
ଭନ ବିଦ୍ୟାପତି ସୁନହ ଯୁବତି
ଏସବ ଏରୂପ ଜାନ
ରାଏ ଶିବସିଂହ ରୂପନାରାୟଣ
ଲଛିମା ଦେବୀ ପରମାଣ ।୫।

ଅର୍ଥ—ତୋର ମନୋହର ବଦନ (ଚନ୍ଦ୍ର)ରେ ସିନ୍ଦୂର ବିନ୍ଦୁ (ସୂର୍ଯ୍ୟ) ଓ ତା ପଛକୁ କୃଷ୍ଣ କେଶ ଗୁଚ୍ଛ, ଏପରି ଶୋଭା ପାଉଛି, ଯେପରି ଅନ୍ଧକାର ସମୂହକୁ ପଶ୍ଚାଦ୍ ଭାଗରେ ରଖି ସୂର୍ଯ୍ୟ ଓ ଚନ୍ଦ୍ର ଏକାସଙ୍ଗରେ ଉଦିତ ହୋଇଛନ୍ତି । ଏଠାରେ ଅନ୍ଧକାର କେଶ ସମୂହ ସହିତ, ଚନ୍ଦ୍ର ବଦନ ସହିତ ଓ ରବି ସିନ୍ଦୂର ବିନ୍ଦୁ ସହିତ ଉପମିତ ।୧। ହେ ସୁନ୍ଦରି ! (ନବଯୌବନର ପ୍ରାରମ୍ଭରେ) ତୁମର ସୁନ୍ଦରତା ଅଧିକ ଶୋଭାମୟୀ ହୋଇ ଅଛି । ବିଧାତା ଅତି ଯତ୍ନ ସହକାରେ କେତେକ ଅଦ୍ଭୁତ ବସ୍ତୁ ତୁମକୁ ପ୍ରଦାନ କରିଛନ୍ତି । ୨ । ଉନ୍ନତ କୁଚକୁ ତୁମେ ବସ୍ତ୍ରାବୃତ କଲେ

ମଧ୍ୟ ସେ ବାରମ୍ବାର ଦୃଷ୍ଟିଗୋଚର ହେଉଅଛନ୍ତି । ଯେଠି ଚନ୍ଦ୍ର କଳେ ମଧ୍ୟ ପର୍ବତ ତୁଷାରାବୃତ ନ ହୋଇ ସ୍ୱୟଂ ପ୍ରକଟିତ ହୁଏ ।୩। ଅଞ୍ଜନ ରେଖାଯୁକ୍ତ ଭ୍ରମ ଚଞ୍ଚଳ ଲୋଚନର ବଙ୍କିମ ଦୃଷ୍ଟି ନିକ୍ଷେପ, ବାୟୁ ସଞ୍ଚାଳିତ ଇନ୍ଦୀବର ଭ୍ରମର ସହ ଯୁକ୍ତ ହୋଇ ଉଲଟି ବା ଓଲଟଢ଼ିବାର ଶୋଭାକୁ ଧାରଣ କରୁଛନ୍ତି ।।୪।

———

( ୭ )

ଯବ ଗୋଧୂଳି ସମୟ ବେଳି
ଧନି ମନ୍ଦିର ବାହିର ଭେଲି
ନବ ଜଲଧର ବିଜୁରି ରେହା
ଦ୍ୱନ୍ଦ୍ୱ ପସାରିଆ ଗେଲି ।୧।
ଧନି ଅଲପ ବୟସୀ ବାଲା
ଜନୁ ଗାଁଥନି ପୁହପ ମାଲା
ଥୋରି ଦରଶନେ ଆଶା ନ ପୂରଲ
ବାଢ଼ଲ ମଦନ ଜ୍ୱାଲା ।୨।
ଗୋରି କଳେବର ନୂନା
ଜନୁ ଆଁଚରେ ଉଜୋର ସୋନା
କେସରି ଜିନିୟା ମାଝାରି ଖୀନ
ଦୁଲହ ଲୋଚନ କୋନା ।୩।
ଇଷତ ହାସନି ସନେ
ମୁଝେ ହାନଲ ନୟନ ବାଣେ
ଚିରଞ୍ଜୀବ ରହୁ ପଞ୍ଚ ଗୌଡ଼େଶ୍ୱର
କବି ବିଦ୍ୟାପତି ଭଣେ ।୪।

ଯେତେବେଳେ ଗୋଧୂଳି ସମୟ ଉପସ୍ଥିତ ହେଲା, ତେତେବେଳେ ସୁନ୍ଦରୀ ମନ୍ଦିର (ଗୃହ)ରୁ ବାହାରକୁ ଆସି ନବଜଳଧରରୁ ଜାତ ବିଦ୍ୟୁଲ୍ଲେଖା ସଦୃଶ ବିବାଦର ସୂତ୍ରପାତ କରିଗଲା । ଅର୍ଥାତ୍ ଚଳାୟମାନା ସୁନ୍ଦରୀ ଅଧିକ ରୂପବତୀ କି ବିଦ୍ୟୁଲ୍ଲେଖା ଅଧିକ ରୂପବତୀ ଏହିପରି ବିବାଦର ସୂତ୍ରପାତ ହେଲା ।୧। ସୁନ୍ଦରୀ ଅଳ୍ପବୟସ୍କା ବାଳା ଯେପରି କି ସୁଗ୍ରଥିତ ପୁଷ୍ପମାଳା, ସାମାନ୍ୟ ଦର୍ଶନରେ ଆଶା ଅପୂର୍ଣ୍ଣ ହୋଇ ରହିଲା ଓ ମଦନ

ଜ୍ୱାଳା ବର୍ଦ୍ଧିତ ହେଲା ।୨। ଏହି ସୁନ୍ଦରୀ ଗୌରବର୍ଣ୍ଣା, ଅନତିଦୀର୍ଘ କଳେବର ଓ ଅଞ୍ଚଳ ସମାବୃତ ସମୁଜ୍ଜ୍ୱଳ ସୁବର୍ଣ୍ଣ ସଦୃଶୀ, ଅର୍ଥାତ୍ ବସନଦ୍ୱାରା ଆଚ୍ଛାଦିତ ଉଜ୍ଜ୍ୱଳ ସୁବର୍ଣ୍ଣ ନିର୍ମିତ ଅଳଙ୍କାରର କାନ୍ତି ଯେପରି ସୁଲକ୍ଷିତ ହୁଏ, ସେହିପରି ଏହି ସୁନ୍ଦରୀର ରୂପକାନ୍ତି ବସନାଭ୍ୟନ୍ତରରୁ ମଧ୍ୟ ପରିଲକ୍ଷିତ ହେଉଅଛି । ଏହି ସୁନ୍ଦରୀ ନିଜର ମଧ୍ୟଭାଗ ଦ୍ୱାରା କେଶରୀ (ସିଂହ) କୁ ଜୟ କରିଅଛି, ଓ ଏହାର ନୟନର ପ୍ରାନ୍ତଭାଗ ସର୍ବଦା ଦୋଳାୟମାନ ହେଉଛି ।୩। ମନ୍ଦହାସ ସହକାରେ ସେ (ସୁନ୍ଦରୀ) ମୋତେ ନୟନ ବାଣଦ୍ୱାରା ଆହତ କଲା । ଭଣିତିରେ କବି ବିଦ୍ୟାପତି ପଞ୍ଚଗୌଡ଼େଶ୍ୱରଙ୍କୁ ଆଶୀର୍ବାଦ କରିଛନ୍ତି ।୪।

( ୮ )

ନନୁୟାଁ ବଦନୀ ଧନି, ବଚନ କହସି ହସି
ଅମିୟା ବରିସେ ଜନୁ ଶରଦ ପୂନିମ ସସୀ
ଅପରୂପ ରୂପ ରମଣି ମଣି
ଯାଇତେ ପେଖଲୁ ଗଜରାଜଗମନୀ ଧନି । ୧

ସିଂହ ଜନୟା ମାଝାରି ଖିନ
ତନୁ ଅତି କୋମଲିନ
କୁଚଶିରୀ ଫଲଭରେ ଭାଙ୍ଗିୟ ପଡ଼ୟେ ଜନି । ୨

କାଜରେ ରଞ୍ଜିତ ବଲି ଧବଲ ନୟନ-ବର
ଭ୍ରମର ଭୁଲଲ ଜନୁ ବିମଲ କମଲ ପର
ଭଣୟେ ବିଦ୍ୟାପତି ସୋ ବର ନାଗର
ରାଇ ରୂପ ହେରି ଗରଗର ଅନ୍ତର । ୩

ଅର୍ଥ—ନବମାତବଦନା ସୁନ୍ଦରୀ ହାସ୍ୟଯୁକ୍ତା ହୋଇ କଥା, କହୁଅଛି । ଯେପରି,ଶରତ୍କାଳୀନ ପୂର୍ଣ୍ଣଚନ୍ଦ୍ର ଅମୃତବର୍ଷଣ କରୁଅଛି । ଚାଲିବା ସମୟରେ ଗଜରାଜ କୁ ଗତିରେ ଜୟକରିଥିବା,ଏହି ଅଦ୍ୱିତୀୟ ରୂପ-ସମ୍ପନ୍ନା ରମଣୀ ରତ୍ନକୁ ମୁଁ ଦେଖିଲି ।୧। ଏହି ସୁନ୍ଦରୀର କଟୀପ୍ରାନ୍ତ ସିଂହର ମଧ୍ୟଭାଗ ଅପେକ୍ଷା ଅଧିକ କ୍ଷୀଣତର ଓ ତନୁ ଅତିଶୟ କୋମଳ । (ଆଶଙ୍କା ହେଉଛି)

ସମ୍ଭବ କୁଚରୂପକ ଶ୍ରୀଫଳଠାରୁ ଗାତ୍ରରେ ଏହି କୋମଳଚର୍ମ ଭଙ୍ଗି ପଡ଼ିବ ।୨। ସୁନ୍ଦରୀ ଧବଳ କାନ୍ତିଯୁକ୍ତ ନୟନ କଜ୍ଜଳ ରଞ୍ଜିତ ହୋଇ ଏହିପରି ପ୍ରତୀୟମାନ ହେଉଛି ଯେପରି କି, ବିମଳ କମଳ ଭ୍ରମରେ ଭ୍ରମର ବିରାଜିତ ହୋଇ ଅଛି । ବିଦ୍ୟାପତି କହନ୍ତି ଯେ,ନାଗରବର (ଶ୍ରୀକୃଷ୍ଣ) ଏଇରୂପ ସନ୍ଦର୍ଶନରେ ଅନ୍ତରରେ ବ୍ୟାକୁଳିତ ହେଲେ ।

( ୯ )

ସଜନୀ, ଭଲ କଏ ପେଖଲ ନ ଭେଲ
ମେଘ-ମାଲ ସଯଁ -ତଡ଼ିତ-ଲତା ଜନି,
ହୃଦୟ ସେଲ ଦଇ ଗେଲ ।୧।
ଆଧ ଆଂଚର ଖସି, ଆଧ ବଦନ ହସି
ଆଧହି ନୟନ-ତରଙ୍ଗ,
ଆଧ ଉରଜ ହେରି,ଆଧ ଆଁଚର ଭରି
ତବ ଧରି ଦଗଧେ ଅନଂଗ ।୨।
ଏକେ ତନୁ ଗୋରା କନକ କଟୋରା
ଅତନୁ କାଂଚଲା ଉପାମ,
ହାର ହାରଲ ମନ ଜନି ବୁଝି
ଏସନ ଫାଁସ ପସାରଲ କାମ ।୩।
ଦସନ ମୁକୁତା ପାଂତି ଅଧର ମିଲାୟଲ,
ମୃଦୁ ମୃଦୁ କହ ତହିଁ ଭାଷା
ବିଦ୍ୟାପତି କହ ଅତଏ ସେ ଦୁଖ ରହ
ହେରି ହେରି ନ ପୂରଲ ଆସା ।୪।

---

ଅର୍ଥ—ହେ ସଖି ! ଭଲ ଭାବରେ ତାହାର ଦେଖାମଧ୍ୟ ହୋଇପାରିଲା ନାହିଁ,ସେତ ମେଘମାଳାରେ ବିଜୁଳୀ ଚମକିଲା ପରି, କ୍ଷଣେମାତ୍ର ମୋ ସମ୍ମୁଖକୁ ଆସି, ହୃଦୟରେ ଶଲ୍ୟ(ଅସ୍ତ୍ରବିଶେଷ)କୁ ବିଦ୍ଧ କରିଦେଇ ଚାଲିଗଲା ।୧। ଅର୍ଦ୍ଧ ସ୍ଖଳିତ-ବସନା, ମୁଖରେ ଈଷତ୍ ହାସ୍ୟଯୁକ୍ତା, ନୟନରେ ଅର୍ଦ୍ଧ

କଟାକ୍ଷ (ନୟନତରଙ୍ଗ), ସ୍ତନର ଅର୍ଦ୍ଧଭାଗ ଦେଖିଲି,ଓ ଅର୍ଦ୍ଧଭାଗ ବସନାବୃତ ଥିଲା, ସେହି ସମସ୍ତରୁ ଅନଙ୍ଗ ମୋତେ ଦଗ୍ଧ କରୁଅଛି ।୨। ଏକେ ତ ତାର ଶରୀର ଗୌରବର୍ଣ୍ଣ, ତହିଁରେ ପୁଣି କନକମୟ କଟୋରା (ଗିନା) ସଦୃଶ ସ୍ତନ, କନ୍ଦର୍ପଦ୍ୱାରା ବଳପୂର୍ବକ ଉପହାର ଦିଆ ହୋଇଥିବା ସେହି ହାରରେ, ସୁଲଗ୍ନ ହୋଇ ମୋର ମନ ହାରିଗଲା । ବୋଧହୁଏ ଏହି ଉଦ୍ଦେଶ୍ୟରେ କନ୍ଦର୍ପ ଇଦୃଶ ପାଶ ସଦୃଶ ହାରକୁ ପ୍ରସାରଣ କରିଅଛି ।୩। ଦଶନ ମୁକ୍ତା ପଂକ୍ତିକୁ ଅଧର ସହ ସଂଯୁକ୍ତ କରି ବାଳା ମୃଦୁବାଣୀ ଉଚ୍ଚାରଣ କରୁଛି । ବିଦ୍ୟାପତି କହୁଛନ୍ତି ଯେ, ତାକୁ ବାରମ୍ବାର ଦେଖି ଦେଖି ମଧ୍ୟ ଆଶାପୂର୍ଣ୍ଣ ନ ହେବାରୁ, ଅନ୍ତରରେ ବ୍ୟଥା ରହିଗଲା ।୪।

( ୧୦ )

ଜାଇତ ପେଖଲି ନହାଏଲି ଗୋରୀ
କତ ସଓଁ ରୂପ ଧନ ଆନଲି ଚୋରି
କେଶ ନିଂଗାରଇତ ବହ ଜଲଧାରା
ଚମର ଗରଏ ଜନି ମୋତିମ ହାର ।୧।

ଅଲକହିଁ ତିତଲ ତେଁ ଅତି ସୋଭା
ଅଲିକୁଲ କମଲ ବେଢ଼ଲ ମଧୁଲୋଭା
ନୀର ନିରଞ୍ଜନ ଲୋଚନ ରାତା
ସିଂଦୂର ମଁଡ଼ିତ ଜନି ପଂକଜ-ପାତା ।୨।

ସଜଲ ରହ ଚୀର ପୟୋଧର ସୀମା
କନକ-ବେଲ ଜନି ପଡ଼ି ଗେଲ ହୀମା
ଓ ନୁକ କରତହିଁ ଚାହ କଏ ଦେହା
ଅବହି ଛୋଡ଼ବ ମୋହି ତେଜବ ନେହା ।୩।

ଏସନ ରସ ନହି ପାଓବ ଆରା
ଇଥେ ଲଗି ରୋଇ ଗରଏ ଜଲଧାରା
ବିଦ୍ୟାପତି କହ ସୁନହ ମୁରାରି
ବସନ ଲଗଲ ଭାବରୂପ ନିହାରି ।୪।

ଅର୍ଥ—ସ୍ନାନ ସାରି ଯାଉଥିବା ସେହି ସୁନ୍ଦରୀକୁ ମୁଁ ଦେଖିଲି । ଜଣାନାହିଁ, ସେ କେଉଁ ସ୍ଥାନରୁ ରୂପଲାବଣ୍ୟକୁ ଅପହରଣ କରି ଆଣିଥିଲି । କେଶ ନିଗାଡ଼ିଲା ବେଳେ ଯେଉଁ ଜଳଧାରା ପଡ଼ୁଛି, ସେ ଏପରି ପ୍ରତୀତ ହେଉଛି ଯେପରି, ଚାମରରୁ ମୁକ୍ତାହାର ଝରିପଡ଼ୁଛି ।୧। ଅଳକାବଳୀ ଜଳସିକ୍ତ ହେବାରୁ ଶୋଭାର ଆତିଶଯ୍ୟ ଘଟିଲା । ଯେପରି ମଧୁଲୋଲୁପ ଅଳିକୁଳ ପଦ୍ମକୁ ବେଷ୍ଟନ କରୁଛନ୍ତି । ଅର୍ଥାତ୍ ଅଳକାବଳୀ ଜଳସିକ୍ତ ହୋଇ ମୁଖୋପରି ନିପତିତ ହେବାରୁ ମନେହେଲା ଯେପରିକି, କମଳ ଭ୍ରମର ସମୂହ ପରିବେଷ୍ଟିତ । ଜଳଦ୍ୱାରା କଜ୍ଜଳଶୂନ୍ୟ ନୟନଯୁଗଳ ରକ୍ତବର୍ଣ୍ଣ ହୋଇଛି ଯେପରିକି, ସିନ୍ଦୂରଶୋଭିତ କମଳ-ପତ୍ର ।୨। ଆର୍ଦ୍ରବସନ ଦ୍ୱାରା ସମାଚ୍ଛାଦିତ ପୟୋଧରକୁ ଦେଖିଲେ ମନେହୁଏ ଯେପରିକି, ସୁବର୍ଣ୍ଣଲତା ଉପରେ ହିମ ପତିତ ହୋଇଅଛି । ଏହା (ଅର୍ଥାତ୍ ଏହି ସଜଳ ବସନ) ଦେହକୁ ଲୁକ୍କାୟିତ କରୁଛି । ଆର୍ଦ୍ର ହେବାରୁ ବସନ କାମିନୀ ଶରୀରରେ ସଂଶ୍ଳିଷ୍ଟ ହୋଇ ଯାଉଛି, ସୁତରାଂ କବିଙ୍କ ଦୃଷ୍ଟିରେ ଏହା (ବସନ) କାମିନୀ-କଳେବରରେ ନିଜ ଶରୀରକୁ ଲୁଚାଇବାର ଚେଷ୍ଟା କରୁଛି । ବସ୍ତ୍ର ଭାବୁଛି—ଏହିକ୍ଷଣି ମୋତେ କାମିନୀ ଛାଡ଼ିଦେବ ଓ ସ୍ନେହ(ଜଳ) ପରିତ୍ୟାଗ କରିବ ।୩। ଅନ୍ୟତ୍ର ଈଦୃଶ ରସ (ବଧୂଅଙ୍ଗ-ସ୍ପର୍ଶସୁଖ) ଆଉ ଲଭି ପାରିବ ନାହିଁ । ଏବଂବିଧ ଅନୁଶୋଚନା ନିବନ୍ଧନ ରୋରୁଦ୍ୟମାନ ବସନ ଜଳଧାରା ମୋଚନ କରୁଛି । ବିଦ୍ୟାପତି କହୁଛନ୍ତି—ହେ ମୁରାରି ! ରାଧାରୂପ ସନ୍ଦର୍ଶନ ପୂର୍ବକ ବସନର ଏପରି ଭାବମୟୀ ଉକ୍ତି ଶ୍ରବଣ କର ।୪।

( ୧୧ )

କାମିନି କରଏ ସିନାନ
ହେରଇତେ ହୃଦୟେ ହାନଲ ପାଁଚବାନ,
ଚିକୁର ଗଲୟେ ଜଲ ଧାରା,
ମୁଖ-ସସି ଭୟେ ରୋଅଏ ଅନ୍ଧାରା ।୧
ତିତଲ ବସନ ତନୁ ଲାଗୁ,
ମୁନିହୁକ ମାନସ ମନମଥ ଜାଗୁ,

କୁଚଯୁଗ ଗୃରୁ ଚକେବା,
　　　　　　　　ନଅ କୁଲ ମିଲଅ ମିଲୟୁଲ ଦେବା ।୨।
ତେଁ ସଙ୍କା ଭୁଜ-ପାସେ,
　　　　　　　　ବାଁଧି ଧଏଲ ଉଡ଼ି ଜାଏତ ଅକାସେ,
କୱ ବିଦ୍ୟାପତି ଗାଓଏ,
　　　　　　　　ଗୁନମତି ଧନି ପୁନମତ ଜନ ପାଓଏ ।୩।

---

ଅର୍ଥ —ସୁନ୍ଦରୀ ସ୍ନାନ କରୁଅଛି, ତା ଉପରେ ଦୃଷ୍ଟି ପଡ଼ିବା ମାତ୍ରକେ ସେ କନ୍ଦର୍ପର ପଞ୍ଚବାଣ ଦ୍ୱାରା ଆହତ କରୁଅଛି । କେଶପାଶରୁ ବିଗଳିତ ଜଳଧାରା ଏପରି ପ୍ରତୀତ ହେଉ ଅଛି—ବୋଧେ ମୁଖଚନ୍ଦ୍ର ଉପରେ ଅନ୍ଧକାର ରୋଦନ କରୁଅଛି ।୧। ତନ୍ୱୀର ବସନ ତନୁରେ ସଂଶ୍ଳିଷ୍ଟ ହୋଇ ରହିଅଛି । ଏହି ଦୃଶ୍ୟ ମୁନିଜନ –ମାନସରେ ମଧ୍ୟ କାମୋଦ୍ରେକ କରାଉଛି । ତାହାର କୁଚଯୁଗ ସୁନ୍ଦର ଚକ୍ରବାକ ସଦୃଶ, ସେ ନିଜର ସ୍ୱଜାତିମାନଙ୍କ ସହିତ ମିଳନ ଆଶାରେ ଉଡ଼ିଯିବା ପାଇଁ ସମୁତ୍ସୁକ ହୋଇଛି ।୨। ଏହି ଚକ୍ରବାକ ମିଥୁନ କାଳେ ଆକାଶକୁ ଉଡ଼ିଯିବେ ଏହି ଆଶଙ୍କାରେ ସୁନ୍ଦରୀ ନିଜ ଭୁଜପାଶରେ ଧରିଛି । (ସ୍ନାନସାରି ଯିବା ସମୟରେ ସ୍ତ୍ରୀମାନେ ସ୍ୱଭାବତଃ ହସ୍ତକୁ ବକ୍ଷସ୍ଥଳ ଉପରେ ରଖି ଚାଲନ୍ତି) କବି ବିଦ୍ୟାପତି ଗାଆନ୍ତି, ସେ ରସିକଜନ ! (ଶ୍ରୀକୃଷ୍ଣ) ଏପରି ଗୁଣବତୀ ନାରୀ (ରାଧା) କୁ ପୁଣ୍ୟବାନ୍ ପୁରୁଷ ଲାଭ କରନ୍ତି ।୩।

( ୧୨ )

ଆଜ୍ ମଝୁ ସୁଭ ଦିନ ଭେଲା
　　　　　　　　କାମିନି ପେଖଲ ସିନାନକ ବେଲା
ଚିକୁର ଗରଏ ଜଲଧାରା
　　　　　　　　ମେହ ବରଖସ୍ୱେ ଜନୁ ମୋତିମ ହାରା ।୧।
ବଦନ ମୋଛଲ ପରଚୁରେ
　　　　　　　　ମାଜି ଧୟଲ ଜନି କନକ-ମୁକୁରେ
ତେଇ ଉଦସଲ କୁଚ-ଜୋରା
　　　　　　　　ପଲଟି ବୈସାଓଲ କନକ-କଟୋରା

ନିବି ବଂଧ କରଲ ଉଦସ
ବିଦ୍ୟାପତି କହ ମନୋରଥ ସେସ ।୨।

ଅର୍ଥ— ଆଜ ମୋର ଶୁଭ ଦିବସ ଯେ—ସେହି କାମିନୀକୁ ସ୍ନାନ କରୁଥିବା ସମୟରେ ଦେଖିବାକୁ ପାଇଲି । କେଶ ଗୁଚ୍ଛରୁ ଜଳର ଧାରା ଏପରି ଭାବରେ ପଡ଼ୁଥିଲା ଯେପରିକି, ମେଘ ମଣ୍ଡଳରୁ ମୁକ୍ତାହାରର ବୃଷ୍ଟି ହେଉଛି । ୧ । ସେ ଉତ୍ତମରୂପେ ନିଜ ମୁଖକୁ ପୋଛୁଥିଲା, (ପରିମାର୍ଜିତ ରୂପରେ ସେ ଏପରି ଦେଖା ଯାଉଥିଲା ) ଯେପରି ସୁବର୍ଣ୍ଣର ଦର୍ପଣକୁ ପରିଷ୍କାର କରି ରଖିଲା ପରି । (ସେ ମୁଖ ପୋଛିବା ପାଇଁ ହାତ ଉପରକୁ ଉଠେଇବା ହେତୁ) ବସନ ରହିତ କୁଚଯୁଗ୍ମ ଏପରି ପ୍ରକଟିତ ହେଉଥିଲା ଯେପରି, କେହି ସୁବର୍ଣ୍ଣ ନିର୍ମିତ ଗିନାକୁ ଲେଉଟାଇ ରଖି ଦେଇଛି । (ବସ୍ତ୍ର ପରିବର୍ତ୍ତନ ପାଇଁ) ଯେତେବେଳେ ସେ ନିଜର ବନ୍ଧ ଗ୍ରନ୍ଥିକୁ ଶିଥିଳ କଲା, ସେତେବେଳେ କବି ବିଦ୍ୟାପତି କହୁଛନ୍ତି, ମୋର ସମସ୍ତ ମନୋରଥ ପୂର୍ଣ୍ଣ ହୋଇଗଲା । ୨ ।

( ୧୩ )

ନ ହାଇ ଉଠଲ ତୀର ରାଇ କମଲମୁଖି,
ସମୁଖ ହେରଲ ବର କାନ
ଗୁରୁଜନ ସଂଗ ଲାଜ ଧନି ନତମୁଖି,
କହସନ ହେରବ ବୟାନ ।୧।
ସଖି ହେ, ଅପରୁବ ଚାତୁରି ଗୋରି,
ସବଜନ ତେଜ କଏ ଅଗୁସରି ସଞ୍ଚରି,
ଆଡ଼ ବଦନ ତହିଁ ଫେରି । ୨ ।
ତହିଁ ପୁନ ମୋତହାର ତୋରି ଫେକଲ,
କହଇତ ହାର ଟୁଟି ଗେଲ,
ସବଜନ ଏକ-ଏକ ଚୁନି ସଞ୍ଚରୁ
ଶ୍ୟାମ ଦରସ ଧନି ଖେଲ । ୨ ।

ନୟନ ଚକୋର କାହ୍ନୁ-ମୁଖ ସସି-ବର
କଏଲ ଅମିୟ-ରସ-ପାନ
ଦୁହୁ ଦୁହୁ ଦରସନ ରସହୁ ପସାରବ
କବି ବିଦ୍ୟାପତି ଭାନ । ୪ ।

ଅର୍ଥ—କମଳମୁଖୀ ରାଧା ସ୍ନାନ କରି ତଟ ଉପରକୁ ଉଠିଆସି ସମ୍ମୁଖରେ ସୁନ୍ଦର କାହ୍ନୁଙ୍କୁ ଦେଖିଲା । ଗୁରୁଜନ ସଙ୍ଗରେ ଥିବାରୁ ବ୍ରୀଡ଼ାବନତ-ବଦନା ସୁନ୍ଦରୀ କିପରି ଶ୍ରୀକୃଷ୍ଣଙ୍କ ମୁଖକୁ ଅବଲୋକନ କରିବ ? ।୧ । କିନ୍ତୁ ହେ ସଖି ! ସେ ସୁନ୍ଦରୀ ଅଦ୍ଭୁତ ଚତୁରୀ ରମଣୀ, ସମସ୍ତ ଗୁରୁଜନଙ୍କୁ ଛାଡ଼ି ଆଗକୁ ଚାଲିଯାଇ, ଆଡ଼ବଦନରେ ଅର୍ଥାତ୍ ମୁହଁ ଫେରାଇବା ବା ବୁଲାଇବା, ଏହି ବ୍ୟାଜରେ ସେ ଦେଖିନେଲା । ୨ ପୁଣି ସେ ନିଜର ମୋତିର ମାଳକୁ ଛିଣ୍ଡାଇ, ତଳେ ପକାଇ ଦେଲା ଓ କହିଲା ଯେ 'ମୋର ହାର ଛିଣ୍ଡିଗଲା', ତହୁଁ ପ୍ରତ୍ୟେକ ଲୋକ ଗୋଟି ଗୋଟି କରି ମୋତିକୁ ଚୟନ କରିବାକୁ ଲାଗିଲେ, ଏହି ଅବସରରେ ସେହି ସୁନ୍ଦରୀ ଶ୍ୟାମଙ୍କ ଦର୍ଶନ ଉତ୍ତମଭାବେ କଲା । ୩ । ବିଦ୍ୟାପତି ଏହା ଅବଗତ ହୋଇ କହୁଛନ୍ତି ଯେ--(ରାଧାଙ୍କର) ନୟନ-ଚକୋର କୃଷ୍ଣମୁଖ ସୁଧାକରରୁ ଅମୃତରସ ପାନକଲା, ଉଭୟେ ଉଭୟଙ୍କ ସନ୍ଦର୍ଶନ ଦ୍ୱାରା ରସ ବିସ୍ତାର କଲେ । ୪ ।

( ୧୪ )

ଅଲଖିତ ହମ ହେରି ବିହସଲି ଥୋରି,
ଜନି ରୟନ ଭେଲ ଚାଁଦଇଁ ଜୋରି,
କୁଟିଲ କାଟାଖ ଲଟ ପଡ଼ି ଗେଲ
ମଧୁକର ଡ଼ମ୍ବର ଅମ୍ବର ଲେଲ । ୧ ।
କାହିକ ସୁନ୍ଦରି, କେ ତାହି ଜାନ
ଆକୁଲ କଏ ଗେଲ ହମର ପରାନ
ଲୀଲା-କମଲ ଭ୍ରମର ଧରୁ ବାରି
ଚମକ ଚଲଲି ଗୋରି ଚକିତ ନିହାରି । ୨ ।

ତେଂ ଭେଲ ଝଲକତ ପୟୋଧର ସୋଭ
କନକ-କମଲ ହେରି କାହ୍ନ ନ ଲୋଭ

ଆଧା ନୁକାୟଲ ଆଧ ଉଦାସ
କୁଚ-କୁମ୍ଭେ କହିଗେଲ ଅପ୍‌ପନ ଆସ ।୩।

ସେ ସବ ଆମିଲ ମଧି ଦଏ ଗେଲ ସନ୍ଦେସ
କଛୁ ନହି ରଖଲହିଁ ରସ-ପରିସେସ

ଭନଇ ବିଦ୍ୟାପତି, ଦୁହୁମନ ଜାଗୁ
ବିସମ କୁସୁମ-ସର କାହ୍ନ ଜନୁ ଲାଗୁ । ୪ ।

---

ଅର୍ଥ—ଅଲକ୍ଷିତ ଭାବରେ ସେ (ରାଧିକା) ମୋତେ ଦେଖି ଈଷତ୍ ହସିଲା, ସେତେବେଳେ ଏପରି ଜଣାଗଲା ଯେପରିକି, ଅନ୍ଧକାର ରଜନୀ ଚନ୍ଦ୍ରକିରଣ ଦ୍ୱାରା ପ୍ରକାଶିତ ହେଲା (କବିଙ୍କ ତୁଳନା ଅନୁସାରେ କାମିନୀ ଯାମିନୀ ସଦୃଶ ଓ ହାସ୍ୟ ଚନ୍ଦ୍ରକିରଣ ପ୍ରତିମ) । ତାର କୁଟିଳ କଟାକ୍ଷଛଟା ମୋ ଉପରେ ନିପତିତ ହେଲା, ତଦ୍ୱାରା ଆକାଶ ଭ୍ରମର ସମୂହ ଦ୍ୱାରା ଶୋଭିତ ହେଲା ପରି ଜଣା ଗଲା । ୧ । କେଜାଣି ଏ କାହାର ରମଣୀ, ମୋର ପ୍ରାଣକୁ ବ୍ୟାକୁଳିତ କରି ଚାଲିଗଲା । ହସ୍ତସ୍ଥିତ ଲୀଳା-କମଳ ଦ୍ୱାରା ଭ୍ରମରମାନଙ୍କୁ ନିବାରଣ କରି, ସୁନ୍ଦରୀ ଚକିତ ଦୃଷ୍ଟିରେ ନିରୀକ୍ଷଣ ପୂର୍ବକ ଚମକି ଚାଲିଗଲା । ୨ । ସେ ଚାଲିଗଲା ସମୟରେ ତାର ସ୍ତନ-ଯୁଗର ଶୋଭା ପ୍ରକାଶିତ ହେଲା । କହନ୍ତୁ ସୁବର୍ଣ୍ଣ-କମଳକୁ ଦେଖି କାହାର ଲୋଭ ହେବ ନାହିଁ ? (ଅର୍ଥାତ୍ ସମସ୍ତଙ୍କର ଲୋଭ ଜାତ ହେବ), ଅର୍ଦ୍ଧ ଭାଗ ବସ୍ତ୍ରାଚ୍ଛାଦିତ ଓ ଅର୍ଦ୍ଧଭାଗ ଅନାଚ୍ଛାଦିତ କୁଚ କୁମ୍ଭ ନିଜର ଅଭିପ୍ରାୟ ପ୍ରକଟିତ କଲା । ୩ । ସେହି ଦୁଷ୍ପ୍ରାପ୍ୟ ସମ୍ପତ୍ତି ଯାହା କେବେହେଲେ ପ୍ରାପ୍ତ ହୋଇପାରିବ ନାହିଁ, ସେ କେବଳ ସନ୍ଦେଶ ମାତ୍ର ମୋତେ ଦେଲେ ରସର କିଛିମାତ୍ର ଅଂଶ ଅବଶିଷ୍ଟ କରି ରଖିଲେ ନାହିଁ, ନିବାନୁରାଗ ବର୍ଣ୍ଣନା ପୂର୍ବକ ବିଦ୍ୟାପତି କହୁଛନ୍ତି— କନ୍ଦର୍ପର ଗୁପ୍ତଶର କାହାକୁ ସ୍ପର୍ଶ କରେ ନାହିଁ, ଅର୍ଥାତ୍ ସମସ୍ତଙ୍କୁ ସ୍ପର୍ଶକରେ । ୪ ।

( ୧୫ )

କଂଟକ ମାଝ କୁସୁମ ପରଗାସ
ଭ୍ରମର ବିକଲ ନହିଁ ପାବଏ ବାସ
ଭ୍ରମରୀ ଭେଲ ଘୁରଏ ସବ ଠାମ
ତୋହେ ବିନୁ ମାଲତୀ ନହି ବିସରାମ । ୧ ।

ରସମତି ମାଲତୀ ପୁନ ପୁନ ଦେଖି
ପିବଏ ଚାହ ମଧୁ ଜୀବ ଉପେଖି
ଓ ମଧୁଜୀବୀ ତୋହେଁ ମଧୁରାସି
ସାଁଚି ଧରସି ମଧୁ ମନେ ନ ଜଲାସି । ୨ ।

ଅପନେହୁ ମନେ ଗୁନ ବୁଝ ଅବଗାହି
ତସୁ ବଧ ଦୂଷନ ଲାଗତ କାହି
ଭନହିଂ ବିଦ୍ୟାପତି ତୌ ପୟ ଜୀବ
ଅଧର ସୁଧାରସ ଜୌଂ ପଏ ପୀବ ।୩।

---

ଅର୍ଥ—ମୁଁ କଣ୍ଟକମଧ୍ୟବର୍ତ୍ତୀ ବିକସିତ ପୁଷ୍ପକୁ ଦେଖୁଅଛି (ଯାହା ପାଇଁ) ଭ୍ରମର ବିକଳ ହେଉଛି, କିନ୍ତୁ ସେଠାରେ ସେ ନିବାସ ପାଉନାହିଁ, (ସଂଯୋଗର କାମନାରେ ମଧ୍ୟ ବିଯୋଗକୁ ସ୍ୱୀକାର କରିବାକୁ ବାଧ୍ୟ ହେଉଛି) ଭ୍ରମର ପ୍ରତ୍ୟେକ ସ୍ଥାନରେ ଘୂରୁଛି, ହେ ମାଳତି, ତୁମ ବିନା ତାଙ୍କୁ ବିଶ୍ରାମ ମିଳୁନାହିଁ ।୧। ସେହି ଭ୍ରମର ଘୂରି ଘୂରି ରହପୂର୍ଣ୍ଣ ମାଳତୀକୁ ଅବଲୋକନ କରୁଅଛି ଓ ନିଜ ଜୀବନକୁ ଉତ୍ସର୍ଗ କରି, ତା'ର ରସପାନ କରିବାପାଇଁ ଇଚ୍ଛୁକ । ସେ ମଧୁଜୀବୀ, (ରସଦ୍ୱାରା ଜୀବନ-ଯାପନକାରୀ) ଓ ତୁମେ ମଧୁର ଖଣି, ତୁମେ ମଧୁକୁ ସଞ୍ଚିତକରି ରଖୁଛ, ରଖ, କିନ୍ତୁ ତା ମନକୁ ଦଗ୍ଧ କରନାହିଁ ।୨। ତୁମେ ନିଜ ମନରେ ବିଚାର କର ଓ ମନନ କର, (ସେ ଯଦି ପ୍ରାଣତ୍ୟାଗ କରେ ତେବେ) ତା ହତ୍ୟାର କଳଙ୍କ କାହାକୁ ଲାଗିବ ? କବି ବିଦ୍ୟାପତି କହୁଛନ୍ତି,—ତେବେ ସେ ଜୀବନ ଲାଭ କରିବ ଯେବେ ଅଧର-ସୁଧା-ରସର ପାନ କରିପାରିବ ।୩। (ଏଠାରେ କୌଣସି ସଖୀ ରାଧାଙ୍କ ସମ୍ମୁଖରେ ଶ୍ରୀକୃଷ୍ଣଙ୍କ ପୂର୍ବରାଗ ବର୍ଣ୍ଣନା କରୁଅଛି) ।

( ୧୭ )

ମାଧବ କି କହବ ସୁନ୍ଦରି ରୂପେ
କତେକ ଯତନ ବିହି ଆନି
ସମାରଲ ଦେଖଲ ନୟନ ସରୂପେ । ୧।

ପଲ୍ଲବ-ରାଜ ଚରଣ-ଯୁଗ
ସୋଭିତ ଗତି ଗଜରାଜକ ଭାନେ
କନକ କଦଲି ପର ସିଂହ
ସମାରଲ ତାପର ମେରୁ ସମାନେ । ୨ ।
ମେରୁ ଉପର ଦୁଇ କମଲ
ଫୁଲୟଲ ନାଲ ବିନା ରୁଚି ପାଇ
ମନମଥ ହାର ଧାର ବହୁ
ସୁରସରି ତଓ ନହି କମଲ ସୁଖାଇ । ୩।
ଅଧର ବିମ୍ବସନ, ଦସନ ଦାଡ଼ିମ
ବିଜୁ ରବି ସସି ଉଗଥିକ ପାସେ
ରାହୁ ଦୂର ବସି ନିୟରେ ନ ଆବଥି
ତେଁ ନହିଁ କରଥି ଗରାସେ । ୪

ସାରଂଗ ନୟନ ବଚନ ପୁନି
ସାରଂଗ ସାରଂଗ ତସୁ ସମଧାନେ
ସାଂରଗ ଉପର ଉଗଲ ଦସ
ସାରଂଗ କେଲି କରଥି ମଧୁପାନେ ।୫।
ଭନଇ ବିଦ୍ୟାପତି ସୁନ ବର ଜୌବତି
ଏହନ ଜଗତ ନହି ଆନେ
ରାଜା ସିବସିଂହ ରୂପନରାୟନ
ଲଖିମା ଦେଇ ପତି ଭାନେ । ୬

ଅର୍ଥ—(ନଖ-ଶିଖ ବର୍ଣ୍ଣନାରେ କବିଙ୍କର ଉକ୍ତି) ହେ ମାଧବ ! ସେହି ସୁନ୍ଦରୀର ରୂପ ବିଷୟରେ ଆଉ ବିଶେଷ କଅଣ କହିବି, ବିଧାତା

କେତେ ଯତ୍ନରେ ତାର ରୂପକୁ ସଜାଡ଼ି ଅଛି। ତାହାକୁ ଆଜି ନିଜ ନୟନରେ ପ୍ରତ୍ୟକ୍ଷ ଦେଖିଲି ।୧। ତାର ଚରଣ-ଯୁଗଳ କମଳ ସଦୃଶ ସୁଶୋଭିତ ଓ ତାର ଗତି ମତ୍ତ-ଗଜରାଜର ଗତି ସଦୃଶ ଶୋଭମାନ । ସୁବର୍ଣ୍ଣ କଦଳୀ-ସ୍ତମ୍ଭ ସଦୃଶ ଜଂଘା ଉପରେ ସିଂହପରି କ୍ଷୀଣ କଟି ବିଦ୍ୟମାନ ଓ ତା ଉପରେ ବକ୍ଷସ୍ଥଳ ପର୍ବତର ସମାନତାକୁ ଧାରଣ କରୁଅଛି ।୨। ପୁଣି ସେହି ପର୍ବତତୁଲ୍ୟ ବକ୍ଷସ୍ଥଳ ଉପରେ ଦୁଇଗୋଟି କମଳପୁଷ୍ପ (ଉରୋଜ) ପ୍ରସ୍ଫୁଟିତ ହୋଇଅଛି, ଏହି କମଳ-ପୁଷ୍ପ ମଧ୍ୟ ବିଚିତ୍ର, କାରଣ ନାଳ ବିନା ଏହି ପୁଷ୍ପ ସ୍ୱୟଂ ପ୍ରସ୍ଫୁଟିତ ହେଉଅଛି । ଉରୋଜ-ଯୁଗଳ ଉପରେ ପଡ଼ିଥିବା ମୁକ୍ତାର ମାଳା, ପର୍ବତରେ ପ୍ରବାହିତ ସୁରସରିତର ଧାରା ସଦୃଶ ଦିଶୁଅଛି, ବୋଧେ ଏହି ଜଳଧାରା ହେତୁ କମଳ-ପୁଷ୍ପ ଶୁଷ୍କ ହେଉନାହିଁ ।୩। ତାର ଓଷ୍ଠ ବିମ୍ବଫଳ ସଦୃଶ, ଓ ଦନ୍ତ-ପଂକ୍ତି ଡାଳିମ-ବୀଜ ସଦୃଶ, ଚନ୍ଦ୍ରମାତୁଲ୍ୟ ମୁଖମଣ୍ଡଳରେ ବାଳ-ସୂର୍ଯ୍ୟ ସଦୃଶ ସିନ୍ଦୂର ବିନ୍ଦୁକୁ ଦେଖି ଏପରି ଜଣାଯାଉଛି ଯେପରି ସୂର୍ଯ୍ୟ ଓ ଚନ୍ଦ୍ର ଏକ ସଙ୍ଗେ ଉଦୟ ହେଲା ପରି । ରାହୁ (କେଶଗୁଚ୍ଛ) ବହୁତ ଦୂରରେ ଅଛି, ସମୀପକୁ ଆସୁନାହିଁ ଏଣୁ ତାଙ୍କୁ ଗ୍ରାସ ମଧ୍ୟ କରି ପାରୁନାହିଁ । (ଜ୍ୟୋତିଷ ଶାସ୍ତ୍ରାନୁସାରେ ସୂର୍ଯ୍ୟ ଓ ଚନ୍ଦ୍ର ଏକ କକ୍ଷସ୍ଥିତ ହେଲେ ଗ୍ରହଣ ହୁଏନାହିଁ) ।୪। ତାର ନୟନ-ଯୁଗ୍ମ ହରିଣୀନେତ୍ର ସଦୃଶ । ତାର ବଚନ କୋକିଳ-ବଚନ ସଦୃଶ, ତାର ଭ୍ରୂ-ଯୁଗ୍ମର କଟାକ୍ଷ କାମଦେବଙ୍କ ଧନୁ ସଦୃଶ, ପଦ୍ମ(ମୁଖ) ଉପରେ ଆରୋହଣ କରି ଦୁଇଗୋଟି ଭ୍ରମର ମଧୁପାନ ଓ କେଳିରେ ନିରତ ହୋଇଅଛି । ଅର୍ଥାତ ପଦ୍ମରୂପକ ବଦନମଣ୍ଡଳରେ ଭୃଙ୍ଗରୂପକ ଚକ୍ଷୁଦ୍ୱୟ ବିରାଜମାନ, କିମ୍ବା ପଦ୍ମନେତ୍ରରେ ଭୃଙ୍ଗରୂପକ ତାରା-ଯୁଗଳ ବିହାର କରୁଅଛି (ଏଠାରେ ସାରଙ୍ଗ ଶବ୍ଦ ବହ୍ୱର୍ଥବ୍ୟଞ୍ଜକ ଯଥା—ଚାତକ ହରିଣ, ଭୃଙ୍ଗ, ହସ୍ତୀ, ଛତ୍ର, ରାଜହଂସ, ଚିତ୍ରମୃଗ, ବାଦ୍ୟଭେଦ, ଅଂଶୁକ, ମୟୂର, କାମଦେବ, ଧନୁ, କେଶ, ସ୍ୱର୍ଣ୍ଣ, ଆଭରଣ, ପଦ୍ମ, ଚନ୍ଦନ, କର୍ପୂର; ପୁଷ୍ପ, କୋକିଳ, ମେଘ; ରାତ୍ରୀ ଓ ସିଂହ) ।୫। କବି ବିଦ୍ୟାପତି କହୁଛନ୍ତି—ହେ ଶ୍ରେଷ୍ଠ ସୁନ୍ଦରି ! ସଂସାରରେ ଏପରି ଅନ୍ୟ କିଏସେ ଅଛି, (ଯେ ତୁମ ଯୋଗ୍ୟ ହେବ) ରାଜା ଶିବସିଂହ ଯେ ଲଛିମାଦେବୀଙ୍କ ପତି, ସେହି ଏକା ତୁମର ଅନୁରୂପ ହୋଇ ପାରନ୍ତି ।୬।

( ୧୭ )

ଜହାଁ ଜହାଁ ପଗ-ଯୁଗ ଧରଇ ।
ତହିଁ ତହିଁ ସରୋରୁହ ଝରଇ ।
ଜହାଁ ଜହାଁ ଝଲକତ ଅଂଗ,
ତହିଁ ତହିଁ ବିଜୁଲି ତରଙ୍ଗ । ୧
କି ହେରଲି ଅପୁରୁବ ଗୋରି,
ପଇଠଲି ହିୟ ମଧି ମୋରି ।
ଜହାଁ ଜହାଁ ନୟନ-ବିକାସ,
ତହିଁ-ତହିଁ କମଲ-ପ୍ରକାସ । ୨
ଜହାଁ ଲହୁ ହାସ ସଞ୍ଚର
ତହିଁ ତହିଁ ଅମିୟ-ବିକାର ।
ଜହାଁ ଜହାଁ କୁଟିଲ କଟାଖ
ତତହିଁ ମଦନ-ସର ଲାଖ । ୩
ହେରଇତ ସେ ଧନି ଥୋର
ଅବ ତିନ ଭୁବନ ଅଁଗୋର ।
ପୁନୁ କିଏ ଦରସନ ପାବ
ଅବ ମୋହେ ଇତ ଦୁଖ ଜାବ ।
ବିଦ୍ୟାପତି କହ ଜାନି
ତୁଅ ଗୁନ ଦେହବ ଆନି । ୪

ଅର୍ଥ—ଯେଉଁ ଯେଉଁ ସ୍ଥଳରେ ସୁନ୍ଦରୀ ନିଜର ପଦଯୁଗଳ ସ୍ଥାପନ କରୁଅଛି, ସେହି ସେହି ସ୍ଥାନ ପଦ୍ମଦ୍ୱାରା ପରିପୂରିତ ହେଉଅଛି, ଯେଉଁ ଯେଉଁ ସ୍ଥାନରେ ତାର ଅଂଗର କାନ୍ତି ଝଲକି ଉଠେ, ଅର୍ଥାତ୍ ଅଙ୍ଗ ପ୍ରଭାର ବିଚ୍ଛୁରଣ ହୁଏ, ସେହି ସେହି ସ୍ଥାନରେ ବିଦ୍ୟୁତ୍‌ତରଙ୍ଗ ପ୍ରତ୍ୟକ୍ଷମାନ ହୁଏ । ୧ । ମୁଁ ସେହି ଅପୂର୍ବ ସୁନ୍ଦରୀକୁ ଅବଲୋକନ କଲି, ସେ ମୋ ହୃଦୟ ମଧ୍ୟରେ ପ୍ରବିଷ୍ଟ ହୋଇ ଗଲା । ଯେଉଁ ଯେଉଁ ଦିଗକୁ ସୁନ୍ଦରୀ ଅନାଇଦିଏ, ସେହି ସେହି ଦିଗରେ ଯେପରି ପଦ୍ମଫୁଟି ଉଠେ । ୨ । ଯେଉଁ ଦିଗରେ ସୁନ୍ଦରୀର ମନ୍ଦହାସର ସଞ୍ଚାରହୁଏ । ସେହି ଦିଗରେ

ଅମୃତରେ ବିକାର ଜନ୍ମେ, ଅର୍ଥାତ୍ ଲୋକେ ହାସ୍ୟରୂପ ଅମୃତସିନ୍ଧୁକୁ ଦେଖି ଅମୃତରେ ବୀତସ୍ପୃହ ହୋଇଯାନ୍ତି । ଯେଉଁ ଯେଉଁ ଦିଗରେ କୁଟିଳ କଟାକ୍ଷର ପାତହୁଏ, ସେହି ସେହି ସ୍ଥାନରେ ଲକ୍ଷ ଲକ୍ଷ ମଦନ-ଶର ନିକ୍ଷିପ୍ତ ହୁଏ । ୩ । ସେହି ସୁନ୍ଦରୀକୁ ଅଳ୍ପମାତ୍ର ଦେଖି, ବର୍ତ୍ତମାନ ତିନି ଭୁବନ ଉଜ୍ଜ୍ୱଳ ରହିଲା ପରି ବୋଧ ହେଉଛି, ଅର୍ଥାତ୍ ଚତୁର୍ଦ୍ଦିଗରେ ସେହି ରୂପକୁ ଦେଖୁଅଛି । ପୁନର୍ବାର ଆଉ କଅଣ ଦର୍ଶନ ଲାଭ କରିବି ? ଯଦି କରେ ତେବେ ମୋର ଏହିଦୁଃଖ ବିଦୂରିତ ହେବ ! କବି ବିଦ୍ୟାପତି କହୁଛନ୍ତି— ଅଧୈର୍ଯ୍ୟ ହେବାର କିଛି କାରଣ ନାହିଁ, ତୁମର ଗୁଣ ତାକୁ ପୁନଃ ଆଣି ଦେବ । ୪ ।

## ଶ୍ରୀରାଧାଙ୍କ ବୟଃସନ୍ଧି

### ( ୧ )

ସୈସବ-ଜୌବନ ଦୁହୁ ମିଲି ଗେଲ,
ସ୍ରବନକ ପଥ ଦୁହୁ ଲୋଚନ ଲେଲ ।
ବଚନକ ଚାତୁରି ଲହୁ ଲହୁ ହାସ,
ଧରନିଏ ଚାଁଦ କଏଲ ପରଗାସ । ୧ ।

ମୁକୁର ଲଈ ଅବ କରଇ ସିଂଗାର,
ସଖି ପୂଛଇ କଇସେ ସୁରତ-ବିହାର ।
ନିରଜନ ଉରଜ ହେରଇ କତ ବେରି
ହଁସଇ ସେ ଅପନ ପୟୋଧର ହେରି । ୨ ।

ପହିଲ ବଦରି ସମ, ପୁନ ନବରଙ୍ଗ,
ଦିନ-ଦିନ ଅନଙ୍ଗ ଅଗୋରଲ ଅଂଗ ।
ମାଧବ ପେଖଲ ଅପୂରବ ବାଲା,
ସୈସବ ଯୌବନ ଦୁହୁ ଏକ ଭେଲା ।
ବିଦ୍ୟାପତି କହ, ତୁହୁ ଆଗେ ଆନି
ଦୁହୁ ଏକ ଯୋଗ ଇହ କେ କହ ସୟାନି । ୩ ।

ଅର୍ଥ—ଶୈଶବ ଓ ଯୌବନ, ଉଭୟର ମିଳନ ହୋଇଗଲା । ଲୋଚନ ଯୁଗଳ ଶ୍ରବଣଦ୍ୱୟର ପଥକୁ ଅବଲମ୍ବନ କଲା, ଅର୍ଥାତ୍ ଅପାଙ୍ଗରେ ଅନାଇବାର ସୂତ୍ରପାତ ହେଲା, ଅଥବା ଯୌବନ ସୁଲଭ ବ୍ରୀଡ଼ାର ଉଦ୍ରେକ ହେବାରୁ ଲୋଚନର କାର୍ଯ୍ୟ, ଶ୍ରବଣ ପଥରେ ହେବାକୁ ଲାଗିଲା,(ଚତୁର୍ଦ୍ଦିଗରେ ଦୃଷ୍ଟି ନିକ୍ଷେପ ସମ୍ପର୍କରେ ସଲଜ୍ଜ ଅନୁଭୂତ ହେବାରୁ ଦୃଷ୍ଟିର କାର୍ଯ୍ୟ ଶ୍ରୁତିଦ୍ୱାରା ସମ୍ପନ୍ନ ହେବାକୁ ଲାଗିଲା, ଯାହା ଦେଖିବାରେ ଲଜ୍ଜାହୁଏ, ତଦ୍‌ବିଷୟକ କୌତୁହଳକୁ, ସୁନ୍ଦରୀ କେବଳ ଶୁଣିବାଦ୍ୱାରା ଚରିତାର୍ଥ କରିବାକୁ ଲାଗିଲା) । ପୂର୍ବେ ବଚନ ଦ୍ୱାରା ଯେଉଁ ଭାବ ବ୍ୟକ୍ତ ହେଉଥିଲେ,ସେ ସବୁ ବର୍ତ୍ତମାନ ମନ୍ଦହାସ (ସ୍ମିତ) ଦ୍ୱାରା ବୁଝା ଯାଉଛନ୍ତି । ଧରଣୀରେ ବର୍ତ୍ତମାନ ଚନ୍ଦ୍ରମାର ପ୍ରକାଶ ସମ୍ଭବ ହେଲା । ସୁନ୍ଦରୀ ଶୋଭାର ଆଧାର ହୋଇଥିବାରୁ,ପୃଥିବୀରେ ଚନ୍ଦ୍ରର ସୌନ୍ଦର୍ଯ୍ୟ ଅନୁଭୂତ ହେଲା ।୧। ବର୍ତ୍ତମାନ ସେ ଦର୍ପଣକୁ ଆଗରେ ରଖି ଶୃଙ୍ଗାର କରୁଅଛି । (ଅଙ୍ଗର ଶୁଚିତା, ମଜ୍ଜନ, ରମ୍ୟବସ୍ତ୍ରପରିଧାନ, କେଶ—ବିନ୍ୟାସ, ସୀମନ୍ତରେ ସିନ୍ଦୂର ଗ୍ରହଣ, କପାଳରେ ତିଳକ, ଚିବୁକରେ ମୃଗମଦବିନ୍ଦୁ (ତିଳ), ହସ୍ତରେ ଲୀଳା-କମଳ, ଭୂଷଣ, କୁସୁମ-ଦାମ, ଅଧରରେ ତାମ୍ବୁଳରାଗ, ନାସାଗ୍ରରେ ମଣି, ଅଙ୍ଗରେ ଚନ୍ଦନ, ଲୋଚନରେ ଅଞ୍ଜନ, ଚରଣରେ ଅଲକ୍ତକ, ଓ କୁଚୋପରି କୁଙ୍କୁମ, ଶୃଙ୍ଗାରର ଏହି ଷୋଡ଼ଶ ଅଙ୍ଗ ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି) । ବାଳା ସଖୀମାନଙ୍କୁ ପଚାରୁଛି, ରତିକ୍ରୀଡ଼ାର ସ୍ୱରୂପ କଅଣ ? ନିର୍ଜନ-ସ୍ଥାନରେ ନିଜର ସ୍ତନ-ଯୁଗଳକୁ ଅନେକବାର ଅବଲୋକନ କରି, ଆନନ୍ଦରେ ହସୁଅଛି ।୨। ତାର ଏହି ସ୍ତନ-ଯୁଗ ପ୍ରଥମେ ବଦରୀଫଳ (ବରକୋଳି) ସଦୃଶ ଥିଲା, ତଦନ୍ତର ନାରଙ୍ଗ (କମଳାଲେମ୍ବୁ) ସଦୃଶ ହେଲା । ପ୍ରତିଦିନ କାମଦେବ ତା ଅଙ୍ଗରେ ନିଜର ସ୍ଥାନ ଅଧିକାର କରୁଅଛି, ମାଧବ, ଏପରି ଅପୂର୍ବ ବାଳାକୁ ଦେଖିଲେ, ଯେଉଁଠାରେ ଶୈଶବ ଓ ଯୌବନ ଏକତ୍ରିତ ହୋଇଥିଲା । ବିଦ୍ୟାପତି କହୁଛନ୍ତି, ହେ ସୁନ୍ଦରି ! ତୁମେ ଅଜ୍ଞାନୀ, ସୁଚତୁରୀ ହୋଇ ଜାଏ ସେ କହିବ ଯେ, ଏ ଦୁହେଁ (ଶୈଶବ ଓ ଯୌବନ) ସମାନଭାବେ ପ୍ରଶଂସାର ଯୋଗ୍ୟ ।୩।

( ୨ )

ଦିନ ଦିନ ପୟୋଧର ଭୈଗେଲ ପୀନ,
ବାଢ଼ଲ ନିତମ୍ବ ମାଝ ଭେଲ ଛୀନ ।
ଅବହିଁ ମଦନ ବାଢ଼ାୟଲ ଦୀଠ,
ଶୈଶବ ସକଳ ଚମକି ଦେଲ ପୀଠ । ୧

ପହିଲ ବଦରି କୁଚ, ପୁନ ନବରଙ୍ଗ,
ଦିନ-ଦିନ ବାଢ଼ଏ ପିଡ଼ଏ ଅନଂଗ ।
ସେ ପୁନ ଭଏ ଗେଲ ବୀଜକପୋ଼ର,
ଅବ କୁଚ ବାଢ଼ଲ ସିରୀଫଲ ଜୋର । ୨

ମାଧବ ପେଖଲ ରମନି ସଧାନ,
ଘାଟ ହି ଭେଟଲ କରଇତ ସିନାନ ।
ତନସୁକ ସୁବସନ ହିରଦୟ ଲାଗି,
ଜେ ପୁରୁଖ ଦେଖବ ତେବର ଭାଗି । ୩

ଉର ହିଲ୍ଲୋଲିତ ଚାଁଚର କେସ,
ଚାମର ଝାଁପଲ କନକ ମହେସ ।
ଭନଇ ବିଦ୍ୟାପତି ସୁନହ ମୁରାରି,
ସୁପୁରୁଖ ବିଲସଏ ସେ ବରନାରି । ୪

---

ଅର୍ଥ – ଦିନକୁ ଦିନ ପୟୋଧରର ପୀନତା ବଢ଼ିବାକୁ ଲାଗିଲା, ନିତମ୍ବର ପୃଥୁଳତା ଜାତ ହେଲା, ଓ ମଧ୍ୟଭାଗ (କଟୀ)ର କ୍ଷୀଣତା ହେଲା, ବର୍ତ୍ତମାନ କନ୍ଦର୍ପର ଦୃଷ୍ଟି ସମଧିକଭାବେ ନିପତିତ ହେଲା, ଏଣୁ ଶୈଶବ ଭୟଭୀତ ହୋଇ ପୃଷ୍ଠଭଙ୍ଗ ଦେଲା ।୧। ଯୌବନର ସ୍ପର୍ଶ ସମୟରେ ବାଳାର କୁଚ-ଯୁଗ୍ମ ବଦରୀଫଳ ସଦୃଶ ହେଲା, ତାପରେ ସେ ବଢ଼ି ନାରଙ୍ଗତୁଲ୍ୟ ହେଲା, ଦିନକୁ ଦିନ ପୁଣି ବଢ଼ୁଅଛି । କାମଦେବ ମଧ୍ୟ ତାକୁ ପୀଡ଼ା ଦେଉଛନ୍ତି । ପୁଣି ସେ (କୁଚ) ବଢ଼ି ବଢ଼ି ଟାଭର ଆକାର ଧାରଣ କଲା । ଏବେ ତ ସେ ବଢ଼ି ବଢ଼ି ଶ୍ରୀଫଳ (ବେଲ୍ୱ)ର ଆକାର

ଧାରଣ କରିଅଛି ।୨। ମାଧବ, ସେହି ସୁନ୍ଦରୀଙ୍କୁ ଖୋଜି ଖୋଜି ଘାଟରେ ସ୍ନାନ କରୁଥିବା ସମୟରେ ସନ୍ଧାନ ପାଇଲେ, ସେ ସମୟରେ ବାଳାର ସୂକ୍ଷ୍ମବସ୍ତ୍ର ଓଦାହୋଇ ତାର ହୃଦୟରେ ସଂଲଗ୍ନ ହୋଇଥିଲା, ଏହି ଅବସ୍ଥାରେ ସେହି ସୁନ୍ଦରୀଙ୍କୁ ଯେଉଁ ପୁରୁଷ ଅବଲୋକନ କରିଛି, ସେ ଅତି ଭାଗ୍ୟଶାଳୀ ।୩। ସେହି ସମୟରେ ସେ ସୁନ୍ଦରୀର ହୃଦୟ କମ୍ପିତ ହେଉଥିଲା ଓ ଆଲୁଳିତ କେଶ ତା ଉପରେ ନିପତିତ ହୋଇଥିଲା, ଚାମରଦ୍ୱାରା ଆଚ୍ଛାଦିତ ସ୍ୱର୍ଣ୍ଣ ନିର୍ମିତ ମହାଦେବଙ୍କପରି ସେହି ଦୃଶ୍ୟ ପ୍ରତୀତ ହେଉଥିଲା । କବି ବିଦ୍ୟାପତି କହୁଛନ୍ତି,— ହେ ମୁରାରି ! କୌଣସି ଶ୍ରେଷ୍ଠପୁରୁଷ ସେହି ସୁନ୍ଦରୀ ସହିତ ବିଳାସ କରିପାରେ ।୪।

'ପଦ୍ୟାମୃତ ସମୁଦ୍ର' ନାମକ ପୁସ୍ତକରେ ଉପରୋକ୍ତ ପଦ୍ୟାବଳୀର ନିମ୍ନଲିଖିତ ପାଠାନ୍ତର ସନ୍ନିବିଷ୍ଟ ହୋଇଛି—

ଦିନେ ଦିନେ ଉନ୍ନତ ପୟୋଧର ପୀନ
ବାଢ଼ଲ ନିତମ୍ବ ମାଝ ଭେଲ କ୍ଷୀନ ।
ଅବକେ ମଦନ ବାଢ଼ାୟଲ ଧୀଠ
ଶୈଶବ ସକଲ ଚମକ ଦିଲ ପୀଠ ।
ଶୈଶବ ଛୋଡ଼ଲ ଶଶିମୁଖ ଦେହ
ଥେତ ଦେଇ ତେଜଲ ତ୍ରିବଲୀ ତିନିରେହ ।
ଏବେ ଭେଲ ଯୌବନ ବଙ୍କିମ ଦୀଠ
ଉପଜଲ ଲାଜ; ହାସ ଭେଲ ମୀଠ ॥
ଦିନେ ଦିନେ ଅନଙ୍ଗ ଅଗରଲ ଅଙ୍ଗ
ଦଲସତି ପରଭବେ ସୈନିକ ଭଂଗ ।
ତାକର ଆଗେ ଭୁ ସ୍ୱା ପରସଙ୍ଗ
ବୁଝି କରବ ଐସେ ହେ କାଜଭଂଗ ।
ସୁକବି ବିଦ୍ୟାପତି କହ ପୁନ ତୋୟ
ରାଧା ରଞ୍ଜନ ଐସେ ଭୁ ସ୍ୱା ହୋୟ ॥

———

ଅର୍ଥର ସମତାଥିବାରୁ ଏହି ପଦାବଳୀର ବ୍ୟାଖ୍ୟା ନିଷ୍ପ୍ରୟୋଜନ ।

( ୩ )

ଖଣେ ଖଣେ ନୟନ କୋଣ ଅନୁସରଈ,
ଖଣେ ଖଣେ ବସନ ଧୂଲି ତନୁ ଭରଈ ।
ଖଣେ ଖଣେ ଦସନ-ଛଟା ଛୁଟ ହାସ,
ଖଣେ ଖଣେ ଅଧର ଆଗେ ଗହୁ ବାସ ।୧।
ଚଉଁକି ଚଲଏ ଖଣେ ଖଣ ଚଲୁ ମନ୍ଦ,
ମନମଥ ପାଠ ପହିଲ ଅନୁବନ୍ଧ ।
ହୃଦୟ ମୁକୁଲ ହେରି ହେରି ଥୋର,
ଖଣେ ଆଁଚର ଦଏ ଖଣେ ହୋଏ ଭୋର ।୨।
ବାଲା ଶୈଶବ-ତାରୁଣ ଭେଟ,
ଲଖଏ ନ ପାରଅ ଜେଠ କନେଠ
ବିଦ୍ୟାପତି କହ ସୁନୁ ବର କାନ
ତରୁଣିମ ଶୈଶବ ଚିହ୍ନଇ ନ ଜାନ । ୩

---

ଅର୍ଥ – କ୍ଷଣ କ୍ଷଣରେ ତାର ନୟନ, କୋଣକୁ ଅନୁସରଣ କରେ, ଅର୍ଥାତ୍ ଦୃଷ୍ଟି କ୍ଷଣେ କ୍ଷଣେ ବକ୍ର ହୁଏ, କ୍ଷଣ କ୍ଷଣରେ ବସନର ଧୂଳିକଣା ଅଙ୍ଗ ପରିପୂର୍ଣ୍ଣ ହୁଏ, ଅର୍ଥାତ୍ ଅନ୍ୟମନସ୍କା ହେତୁ ବା ତାରଲ୍ୟ ନିବନ୍ଧନ ହେତୁ, କେବେ କେବେ ଅଙ୍ଗ ବସନର କିୟଦଂଶ ଭୂମିରେ ପଡ଼ିଯାଇ ଧୂସରିତ ହୁଏ, ପୁଣି ତାଦ୍ୱାରା ଅଙ୍ଗ ଆବରିତ କରୁଥିବାରୁ ନିଜ ଶରୀର ଧୂଳି-ଧୂସରିତ ହୁଏ । କ୍ଷଣ କ୍ଷଣରେ ଦଶନ-କାନ୍ତି ହାସ ସହିତ ବିଚ୍ଛୁରିତ ହୁଏ ଓ ସମୟେ ସମୟେ ତାକୁ ଲୁଚେଇବା ପାଇଁ ଅଧରକୁ ବସ୍ତ୍ରଦ୍ୱାରା ଆଚ୍ଛାଦିତ କରେ । ୧ । କେବେ କେବେ ବାଳା ସଚକିତା ହୋଇ ଶୀଘ୍ର ଗମନ କରେ ଓ କେବେ କେବେ ମନ୍ଦ ମନ୍ଦ ଗମନ କରେ । ମନୁଷ୍ୟର ଏହା ପ୍ରଥମ ଅନୁବନ୍ଧ (ଭୂମିକା) । ପୁଣି କେବେ କେବେ ନିଜ ହୃଦୟ (ସ୍ତନ) କୁ ଅଳ୍ପ ଦେଖିନିଏ, ଓ ଅପର କ୍ଷଣରେ ତାକୁ ବସ୍ତ୍ରଦ୍ୱାରା ଆଚ୍ଛାଦିତ କରିଦିଏ । ୨ । ବାଳାର ଶରୀରରେ ଶୈଶବ ଓ ଯୌବନ ସମାଗମ, କିନ୍ତୁ ଜଣାଯାଉ ନାହିଁ ଏହି ଦୁହିଁଙ୍କ

ମଧ୍ୟରେ କିଏ ବଡ଼ କିଏ ସାନ ? ବିଦ୍ୟାପତି କହୁଛନ୍ତି ହେ ଶ୍ରେଷ୍ଠ କାହ୍ନ ! ତାରୁଣ୍ୟକୁ ପ୍ରାପ୍ତ ହୋଇଥିବା ଶୈଶବ ଚିହ୍ନା ପଡ଼େ ନାହିଁ । ୩ ।

( ୪ )

ସୈସବ ଜୌବନ ଦରସନ ଭେଲ,
ଦୁହୁ ଦଲ ବଲେ ଦନ୍ଦ ପରି ଗେଲ ।
କବହୁ ବାଧୟ କଚ କବହୁଁ ବିଥାରି ।
କବହୁଁ ଝାଁପୟ ଅଙ୍ଗ କବହୁଁ ଉଘାରି । ୧ ।
ଅତି ଥିର ନୟନ ଅଥିର କଛୁ ଭେଲ,
ଉରଜ-ଉଦୟ ଥଲ ଲାଲିମ ଦେଲ
ଚଂଚଲ ଚରନ, 'ଚିତ ଚଂଚଲ ଭାନ,
ଜାଗଲ ମନସିଜ ମୁଦିତ ନୟାନ
ବିଦ୍ୟାପତି କହ ସୁନୁ ବର କାନ,
ଧୈରଜ ଧରହ ମିଲାୟବ ଆନ । ୨ ।

---

ଅର୍ଥ —ଶୈଶବରେ ଯୌବନ-ଦର୍ଶନ ଘଟିଲା, ଅର୍ଥାତ୍ ଶୈଶବ ଓ ଯୌବନର ସନ୍ଧି ସମୟ ସମୁପସ୍ଥିତ ହେଲା । ଶ୍ରୀକୃଷ୍ଣ ସଖି ନିକଟରେ ଶ୍ରୀରାଧାଙ୍କ ଯୌବନ ପ୍ରାପ୍ତିକୁ ବର୍ଣ୍ଣନା କରି କହୁଛନ୍ତି ! ଧନି ବର୍ତ୍ତମାନ ଉଭୟ (ଶୈଶବ ଓ ଯୌବନ) ଦଳ ମଧ୍ୟରେ ସଂଗ୍ରାମ ଆରମ୍ଭ ହୋଇଛି, (ନିଜ ନିଜର ଆଧିପତ୍ୟ ସ୍ଥାପନ କରିବା ପାଇଁ ସମୁଖ୍ରକ ଉଭୟ ଦଳ ବାଳା ଉପରେ ପ୍ରଭାବ ପକାଉଛନ୍ତି, ଯେତେବେଳେ ଯାହାର ପ୍ରଭାବ ଅଧିକ ହେଉଛି ସେତେବେଳେ ସେ ବାଳା ତଦନୁରୂପ ଆଚରଣ କରୁଛି ) । କେତେବେଳେ କେଶ ସମୂହକୁ ବାନ୍ଧି ରଖୁଛନ୍ତି କେତେ ବେଳେ କେଶ ସମୂହକୁ ପ୍ରସାରିତ (ମୁକୁଳା) କରି ରଖୁଛି । କେତେବେଳେ ଅଙ୍ଗକୁ ଆବୃତ କରି ରଖୁଛନ୍ତି, କେତେବେଳେ ଅନାବୃତ କରି ରଖୁଛି ।୧। ତାହାର ସ୍ଥିର ନେତ୍ର କିଞ୍ଚିତ ଅସ୍ଥିର ହେଲା, ସ୍ତନୋଦ୍ଗମ ସ୍ଥାନ ରକ୍ତାଭ ହେଲା । ପ୍ରଥମେ ପଦ-ଯୁଗରେ ଚଞ୍ଚଳତା ଥିଲା, ବର୍ତ୍ତମାନ ଚିତ୍ତରେ ମଧ୍ୟ ଚଞ୍ଚଳତା ପ୍ରକାଶିତ

ହେଉଛି । ମଦନ ଏ ପର୍ଯ୍ୟନ୍ତ ମୁଦିତ ନୟନ ଅର୍ଥାତ୍ ପ୍ରସୁପ୍ତ ଥିଲା; ଏବେ ଜାଗ୍ରତ ହେଲା । ବିଦ୍ୟାପତି କହୁଛନ୍ତି- ହେ ସୁନ୍ଦର କାହ୍ନୁ ! ତୁମେ ଧୈର୍ଯ୍ୟ ଧାରଣ କର । ତାକୁ ଆଣି ତୁମ ସଙ୍ଗରେ ମିଳନ କରାଇ ଦେବି । ୨ ।

( ୫ )

ଖେଳତ ନା ଖେଳତ ଲୋକ ଦେଖି ଲାଜ,
ହେରତ ନା ହେରତ ସହଚରି ମାଝ ।
ସୁନ ସୁନ ମାଧବ ତୋହାରି ଦୋହାଇ
ବଡ଼ ଅପରୂପ ଆଜୁ ପେଖଲୁ ରାଇ ।୧।
ମୁଖରୁଚି ମନୋହର ଅଧର ସୁରଙ୍ଗ
ଫୁଟଲ ବନ୍ଧୁଲି କମଲକ ସଙ୍ଗ ।
ଲୋଚନ ଯୁଗଲ ଭୃଙ୍ଗ-ଆକାର
ମଧୁ ମାତଲ କୟେ ଉଡ଼ଇ ନା ପାର ।୨।
ଭାଙ୍ଗକ ଭଙ୍ଗିମ ଥୋରି ଜନୁ
କାଜରେ ସାଜଲ ମଦନ ଧନୁ
ଭଣୟେ ବିଦ୍ୟାପତି ଦୋତିକ ବଚନେ
ବିକସଲ ଅଙ୍ଗ ନା ଯାବତ ଧରନେ ।୩।

---

ଅର୍ଥ—ସେ ବର୍ତ୍ତମାନ ଖେଳ ମଧ୍ୟ ଖେଳେ ନାହିଁ । ଲୋକଙ୍କୁ ସମ୍ମୁଖରେ ଦେଖିଲେ ଲଜ୍ଜିତା ହୁଏ । ସହଚରୀ ମାନଙ୍କ ମେଳରେ ରହି ଲୋକଙ୍କୁ ଦେଖିସୁଦ୍ଧା ଦେଖେ ନାହିଁ । ଶୁଣ,ହେ ମାଧବ, ଶୁଣ, ତୁମ୍ଭର ରାଣଦେଇ କହୁଛି,ଯେ ମୁଁ ଆଜ ରାଈଙ୍କୁ ବଡ଼ ଅପରୂପ ଭାବେ ଦେଖିଲି ।୧। ତାଙ୍କର ମନୋହର ମୁଖକାନ୍ତି ଓ ବନ୍ଧୁଲୋପମ ଅଧରକୁ ଦେଖି ପ୍ରତୀତ ହୁଏ,ଯେପରି ପଦ୍ମ ସଙ୍ଗରେ ବନ୍ଧୁକପୁଷ୍ପ ବିକସିତ ହୋଇଛି । ଭ୍ରମରାକାର ତାଙ୍କର ନୟନ-ଯୁଗଳ, ମଧୁଦ୍ୱାରା ଉନ୍ମତ୍ତ ହୋଇ ପଡ଼ିଥିବାରୁ, ଉଡ଼ିବା ପାଇଁ ଅସମର୍ଥ ହୋଇଛି । ୨ । ଈଷତ୍ ଭଙ୍ଗିମାଯୁକ୍ତ ତାଙ୍କର ଭ୍ରୂଲତା କଜ୍ଜ୍ୱଳ-ରଞ୍ଜିତ ମଦନ-ଧନୁକୁ ତିରସ୍କାର କରୁଛି । ବିଦ୍ୟାପତି କହୁଛନ୍ତି-

ଦୃଷ୍ଟିର ବିଚନାନୁଯାୟୀ ସର୍ବାଙ୍ଗର ବିକାଶ ପୂର୍ଣ୍ଣତ୍ୱକୁ ଲାଭ କରିଛି ଓ ତାକୁ ଧରି ରଖିହେବ ନାହିଁ । ୩ ।

( ୭ )

ନା ରହେ ଗୁରୁଜନ ମାଝେ
ବେକତ ଅଙ୍ଗନା ଝାଁପଏ ଲାଜେ ।
ବାଲଜନ ସଙ୍ଗ ଜବ ରହଇ
ତରୁଣୀ ପାଇ ପରିହାସ ତହିଁ କରଇ ।୧।
ମାଧବ ତୁଅ ଲାଗି ଭେଟଲୁ ରମଣୀ
କୋ କହେ ବାଲା କୋ କହେ ତରୁଣୀ ।
କେଲି ରଭସ ଜବ ସୁନେ
ଆନତ ହେରି ତତହି ଦେଇ କାନେ ।୨।
ଇଥେ ଯଦି କୋଇ କରଏ ପରଚାରି
କାଁଦନ ମାଖି ହାସି ଦେଏ ଗାରି ।
ସୁକବି ବିଦ୍ୟାପତି ଭଣେ
ବାଲ ଚରିତ ରସିକ ଜନ ଜାନେ ।୩।

---

ଅର୍ଥ—ଏହି ବାଳା ସ୍ୱାଭାବିକ ଲଜ୍ଜାବଶ ହୋଇ, ନିଜର ବିକଶିତ ହେଉଥିବା ଅଙ୍ଗ ପ୍ରତ୍ୟଙ୍ଗକୁ ଅନାବୃତ କରି, ଗୁରୁଜନ ମାନଙ୍କ ମଧ୍ୟରେ ବର୍ତ୍ତମାନ ରହୁନାହିଁ । ଅର୍ଥାତ୍ ସର୍ବଦା ସେ ବାଳା ନିଜର ଅଙ୍ଗ ପ୍ରତ୍ୟଙ୍ଗକୁ ଆବୃତ କରି ରଖୁଅଛି । ଯେତେବେଳେ ସେ ବାଳିକାମାନଙ୍କ ସଙ୍ଗରେ ଯାଏ ସେତେବେଳେ ସେହି ବାଳିକାମାନେ ମଧ୍ୟ ତାକୁ ତରୁଣୀ (ବୟଃପ୍ରାପ୍ତା) ବୋଲି କହି ପରିହାସ କରନ୍ତି ।୧। ହେ ମାଧବ ! ତୁମ ପକାସେ ମୁଁ ଏହି ରମଣୀସହ ଦେଖାକଲି, ଏହି ରମଣୀକୁ କେହି କେହି ବାଳା ବୋଲି କହୁଛନ୍ତି, ଓ କେହି କେହି ତରୁଣୀ ବୋଲି କହୁଛନ୍ତି । ଏହି ବାଳା କଥା ପ୍ରସଙ୍ଗରେ ଯଦି କେଳି ରହସ୍ୟର କଥା ଶୁଣୁଛି, ସେତେବେଳେ ଛଳନା କରି ଅନ୍ୟ ଦିଗକୁ ଅନାଇ ସେହି କେଳି ରହସ୍ୟ କଥା ଶୁଣିବାକୁ କାନ ଦେଉଛି ।୨। ଯଦି କୌଣସି ସଖୀ

ଏହାକୁ (କେଳି-ରହସ୍ୟ-କଥା ଶୁଣିବାକୁ) ପ୍ରତ୍ୟାଖ୍ୟାତ କରେ, ତେବେ ସେ ପ୍ରଶ୍ନ କରୁଥିବା ସଖୀକୁ କ୍ରନ୍ଦନ-ମିଶ୍ରିତ ହାସ୍ୟ ସହ ଗାଳିଦିଏ । ସୁକବି ବିଦ୍ୟାପତି କହୁଛନ୍ତି—ବାଳାର ଚରିତକୁ ରସିକଜନମାନେ ଜାଣନ୍ତି ।୩।

( ୭ )

କଛୁ କଛୁ ଉତପତି ଅଙ୍କୁର ଭେଲ
ଚରନ ଚପଲ ଗତି ଲୋଚନ ଲେଲ ।
ଅବ ସବ ଖନ ରହ ଆଁଚର ହାତ
ଲାଜେ ସଖିଗନ ନ ପୁଛଏ ବାତ ।୧।
କି କହବ ମାଧବ ବୟସକ ସଂଧି
ହେରଇତ ମନସିଜ ମନ ରହୁ ବଂଧି ।
ତଇଓ କାମ ହୃଦୟ ଅନୁପାମ
ରୋପଲ ଘଟ ଉଚଲ କଏ ଠାମ ।୨।
ସୁନଇତ ରସ-କଥା ଥାପଏ ଚୀତ
ଜଇସେ କୁରଙ୍ଗିନ ସୁନଏ ସଂଗୀତ
ସୈସବ-ଯୌବନ ଉପଜଲ ବାଦ
କଓ ନ ମାନେ ଜୟ ଅବସାଦ ।୩।
ବିଦ୍ୟାପତି କୌତୁକ ବଲିହାରି
ସୈସବ ସେ ତନୁ ଛୋଡ଼ନହିଁ ପାରି ।୪।

---

ଅର୍ଥ—ବାଳାର ବକ୍ଷସ୍ଥଳରେ ଟିକିଏ ଟିକିଏ ସ୍ତନର ଅଙ୍କୁରୋଦ୍‌ଗମ ହେଲାଣି । ଚରଣର ଚପଳତାକୁ ଲୋଚନ ଗ୍ରହଣ କଲାଣି । ବର୍ତ୍ତମାନ (ବୟଃସନ୍ଧି ସମୟରେ) ସର୍ବଦା ଅଞ୍ଚଳରେ ହାତ ରହୁଅଛି । ଲଜ୍ଜାରେ ସଖୀମାନଙ୍କୁ ମଧ୍ୟ କୌଣସି କଥା ପଚାରି ପାରୁନାହିଁ ।୧। ହେ ମାଧବ ! ଏହି ବୟଃସନ୍ଧିର କଥା କଣ କହିବି ? ଏହାର ଦର୍ଶନମାତ୍ର ଲାଭକରି କନ୍ଦର୍ପର ମନ ବାନ୍ଧିହୋଇ ଯାଇଛି । ତଥାପି କନ୍ଦର୍ପ ସେହି ବାଳାର ହୃଦୟରେ ଘଟକୁ ସ୍ଥାପିତ କରି ସେହିସ୍ଥାନକୁ ଉଚ୍ଚ କରିଦେଇଛି ।୨। ହରିଣୀ ଯେପରି ନିବିଷ୍ଟଚିତ୍ତରେ ସଂଗୀତ ଶ୍ରବଣକରେ, ସେହିପରି ଏହି

ରମଣୀମଧ୍ୟ ଶୃଙ୍ଗାର ରସକଥା ଶ୍ରବଣରେ ମନୋନିବେଶ କରୁଅଛି । ବର୍ତ୍ତମାନ ଶୈଶବ ଓ ଯୌବନ ମଧ୍ୟରେ ବିବାଦ ଉପୁଜିଛି । କେହିହେଲେ ନିଜର ଜୟ-ପରାଜୟ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି ।୩। ବିଦ୍ୟାପତି କବି ଏହି କୌତୁକରେ ନିମଜ୍ଜିତ । ତଥାପି ତାଙ୍କ ମନରେ ଧାରଣା ହେଉଛି ଯେ, ପରିଶେଷରେ ଶୈଶବକୁ ହିଁ ବାଳାର ଶରୀରକୁ ଛାଡ଼ିବାକୁ ପଡ଼ିବ ।୪।

( ୮ )

ଆଓ୍ୱଲ ଯୌବନ ସୈସବ ଗେଲ
ଚରଣ-ଚପଲତା ଲୋଚନ ନେଲ
କରୁ ଦୁହୁଁ ଲୋଚନ ଦୂତକ କାଜ
ହାସ ଗୋପତ ଭେଲ ଉପଜଲ ଲାଜ ।୧।
ଅବ ଅନୁଖନ ଦେଇ ଆଁଚରେ ହାତ
ସଗର ବଚନ କହୁ ନତ କରୁ ମାଥ
କଟିକ ଗୌରବ ପାଓଲ ନିତମ୍ବ
ଚଲଇତେ ସହଚରି କର ଅବଲମ୍ବ ।୨।

---

ଅର୍ଥ—ଯୌବନ ଆସି ଉପସ୍ଥିତ ହେବାରୁ, ବର୍ତ୍ତମାନ ଶୈଶବ ଅପସରିତ ହେଉଅଛି । ଶୈଶବ ଜନିତ ଚରଣର ଚପଳତାକୁ, ବର୍ତ୍ତମାନ (ଯୌବନାବସ୍ଥାରେ) ନୟନଯୁଗ୍ମ ଗ୍ରହଣ କଲାଣି । ଚପଳତା ବିଶିଷ୍ଟ ବେନି ନେତ୍ର, ଦୂତର କାର୍ଯ୍ୟକୁ ସମ୍ପାଦନ କରୁଛନ୍ତି । ହାସର ଗୋପନ ପୂର୍ବକ ଲଜ୍ଜାର ଉତ୍ପତ୍ତି ହେଲାଣି ।୧। ରମଣୀ ବର୍ତ୍ତମାନ ସବୁସମୟରେ ଅଞ୍ଚଳରେ ହାତଦେଇ ଓ ମସ୍ତକକୁ ଅବନତ କରି କଥୋପକଥନ କରୁଅଛି । ଏବେ କଟିଦେଶର ଗୁରୁତ୍ୱକୁ ନିତମ୍ବ ପ୍ରଦେଶ ଗ୍ରହଣ କରିଅଛି । ଚାଲିବା ସମୟରେ ମଧ୍ୟ ସହଚରୀମାନଙ୍କର କରାବଲମ୍ବନ କରି ଗମନ କରୁଅଛି ।୨।

(ହେ ସୁନ୍ଦର କାହ୍ନୁ ! ମୁଁ ଏସବୁ ବିଷୟ ତୁମ ଆଗରେ ନିର୍ଣ୍ଣୟ କରି କହିଲି, ବର୍ତ୍ତମାନ ତୁମେ ଏ ବିଷୟରେ ବିହିତ ବିଧାନ କର)

## ଶ୍ରୀରାଧାଙ୍କ ପୂର୍ବରାଗ

( ୧ )

କି କହବରେ ସଖି କାନୁକ ରୂପ
କୋ ପତିୟାୟବ ସପନ ସରୂପ ।
ଅଭିନବ ଜଲଧର ସୁନ୍ଦର ଦେହ
ପୀତବସନ ପର ସୌଦାମିନି ସେହ ।୧।
ଝାମର ଝାମର କୁଟିଲହି କେଶ
କାଏ ସସିମଣ୍ଡଲ ସିଖଣ୍ଡ ସମ୍ବେଶ ।
ଜାତକି କେତକି କୁସୁମ ସୁବାସେ
ଫୁଲସର ମନମଥ ତେଜଲ ତରାସେ ।୨।
ବିଦ୍ୟାପତି କହ କି କହବ ଆର
ଶୂନ୍ୟ କରଲ ବିହି ମଦନ ଭଣ୍ଡାର ।୩।

ଅର୍ଥ – ହେ ସଖି ! କାହ୍ନୁଙ୍କ ରୂପଲାବଣ୍ୟ ବିଷୟରେ କ'ଣ ଅବା କୋ ସମ୍ମୁଖରେ କହିବି, ସ୍ୱପ୍ନ-ସଦୃଶ କଥାରେ କେଉଁ ଲୋକ ଅବା ବିଶ୍ୱାସ କରିବ ? ଅଭିନବ-ଜଳଧର ସଦୃଶ କମନୀୟ ତାଙ୍କର ଦେହକାନ୍ତି, ସୌଦାମିନୀ ତୁଲ୍ୟ ପୀତ ବସନ ତାଙ୍କର ପରିଧେୟ ।୧। ଝାଁପୁଲ ଝାଁପୁଲ ଓ କୁଞ୍ଚିତ କେଶ, ଚନ୍ଦ୍ରମଣ୍ଡଳରେ ମୟୂରଚନ୍ଦ୍ରିକାର ବିଚିତ୍ର ସମାବେଶ ହେଲାପରି ଶୋଭିତ ହେଉଅଛି । ଜାତି ଓ କେତକୀ ପୁଷ୍ପର ସୁଗନ୍ଧରେ କନ୍ଦର୍ପ ମଧ୍ୟ ଉଦ୍‌ବେଜିତ ହୋଇ ନିଜର ପୁଷ୍ପଶରକୁ ତ୍ୟାଗ କରୁଛି ।୨। କବି ବିଦ୍ୟାପତି କହୁଛନ୍ତି—ମୁଁ ଆଉ ବିଶେଷ କଣ କହିବି ? କେବଳ ଏତିକି ମାତ୍ର କହୁଛି ଯେ, ବିଧାତା କନ୍ଦର୍ପର ସୌନ୍ଦର୍ଯ୍ୟ ଭଣ୍ଡାରକୁ ରିକ୍ତ କରି ଦେଇଛନ୍ତି ।୩।

( ୨ )

କାନୁ ହେରବ ଛଲ ମନ ବଡ଼ ସାଧ
କାନୁ ହେରଇତ ଭେଲ ଅତ ପରମାଦ
ତବ ଧରି ଅବୁଧି ମୁଗୁଧି ହମ ନାରି
କି କହି କି ସୁନି କଛୁ ବୁଝିଏ ନ ପାରି ।୧।

ସାଓନ ଘନ ସମ ଝରୁ ଦୁ'ନୟାନ
ଅବିରତ ଧସ-ଧସ କରଏ ପରାନ ।
କୀ ଲାଗି ସଜନୀ ଦରସନ ଭେଲ
ରଭସେ ଅପନ ଜିଉ ପରହାଥ ଦେଲ ।୨।
ନା ଜାନୁ କତ୍ୟେ କରୁ ମୋହନ-ଚୋର
ହେରଇତ ପ୍ରାନ ହରିଲେଇ ଗେଲ ମୋର ।
ଅତ ସବ ଆଦର ଗେଲ ଦରସାଇ
ଜତ ବିସରିଏ ତତ ବିସର ନ ଜାଇ ।୩।
ବିଦ୍ୟାପତି କହ ସୁନୁ ବର ନାରି
ଧୈରଜ ଧରୁ ଚିତ ମିଲବ ମୁରାରି ।୪।

---

ଅର୍ଥ—କାହ୍ନୁଙ୍କୁ ଦେଖିବା ପାଇଁ ମୋ ମନରେ ସବିଶେଷ ଆଗ୍ରହ ଥିଲା, ଏତିକି ମାତ୍ର ଅପରାଧ ମୋର ହୋଇଗଲା, ସେତେବେଳ ପର୍ଯ୍ୟନ୍ତ (ନ ଦେଖିବା ପର୍ଯ୍ୟନ୍ତ) ମୁଁ ବୁଦ୍ଧିହୀନା ଓ ମୁଗ୍‌ଧା (କାମକଳା ଜ୍ଞାନ-ରହିତା) ଥିଲି, ତେଣୁ ତାଙ୍କୁ ଦେଖିଲାବେଳେ ସେ ମୋତେ କଅଣ ସବୁ କହିଲେ ଓ ମୁଁ କଣ ସବୁ ଶୁଣିଲି, କିଛିମାତ୍ର ବୁଝି ପାରିଲି ନାହିଁ । ୧ । ବର୍ତ୍ତମାନ (ତାଙ୍କୁ ଦେଖିସାରିଲା ପରେ) ଶ୍ରାବଣର ମେଘ ସଦୃଶ ଉଭୟ ନୟନ ବରଷୁଅଛି, ହୃଦୟ ସର୍ବଦା ଧକ୍ ଧକ୍ କରୁଅଛି, ହେ ସଖି ! ତାଙ୍କର ଦର୍ଶନ କାହିଁକି ଘଟିଲା ? ଉତ୍ସୁକ୍ୟବଶ ହୋଇ ମୁଁ ନିଜପ୍ରାଣକୁ ପରହସ୍ତରେ ସମର୍ପଣ କରିଦେଲି ।୨। ଜଣାନାହିଁ, ସେହି ଚୋର ମୋହନ କଣ କରିବ ? ସେ ତ ଦେଖିଲା ମାତ୍ରକେ ମୋର ପ୍ରାଣକୁ ଅପହରଣ କରି ନେଇ ଯାଇଛନ୍ତି, ସେ ଏତେ ସ୍ନେହ ଦେଖେଇଲେ ଯେ,ଯେତେ ଭୁଲିବାକୁ ଚେଷ୍ଟାକଲେ ମଧ୍ୟ ଭୁଲି ପାରୁନାହିଁ ।୩। କବି ବିଦ୍ୟାପତି କହୁଛନ୍ତି—ହେ ଶ୍ରେଷ୍ଠ ରମଣୀ ! ଶୁଣ, ମନରେ ଧୈର୍ଯ୍ୟ ଧାରଣ କର, ମୁରାରି ଅବଶ୍ୟ ମିଳିବେ ।୪।

( ୩ )

ଏ ସଖି ପେଖଲି ଏକ ଅପରୂପ
ସୁନଇତ ମାନବି ସପନ ସରୂପ ।

କମଳ ଯୁଗଳ ପର ଚାନ୍ଦକ ମାଳ
ତା ପର ଉପଜଲ ତରୁଣ ତମାଳ ।୧।

ତା ପର ବେଢ଼ଲ ବିଜୁରି ଲତା
କାଳିନ୍ଦୀ ତଟ ଧୀରେ ଚଲି ଯାତା ।
ସାଖା-ସିଖର ସୁଧାକର ପାଁତି
ତାହି ନବ ପଲ୍ଲବ ଅରୁଣକ ଭାଁତି ।୨।

ବିମଲ ବିମ୍ବଫଲ ଯୁଗଲ ବିକାସ
ତା ପର କୀର ଥୀର କରୁ ବାସ ।
ତା ପର ଚଞ୍ଚଲ ଖଞ୍ଜନ-ଜୋର
ତା ପର ସାଁପିନି ଝାଁପଲ ମୋର ।୩।

ଏ ସଖି ! ରଙ୍ଗିନି କହଲ ନିସାନ
ହେରଇତ ପୁନି ମୋର ହରଲ ଗିଆନ ।
କବି ବିଦ୍ୟାପତି ଏହ ରସ ଭାନ
ସୁପୁରୁଖ ମରମ ତୁହୁ ଭଲ ଜାନ ।୪।

---

ଅର୍ଥ – ହେ ସଖି ! ଗୋଟିଏ ଅପୂର୍ବ ରୂପ ମୁଁ ଦେଖିଲି, ଶୁଣିଲେ ତୋତେ ସ୍ୱପ୍ନତୁଲ୍ୟ ପ୍ରତୀତ ହେବ । କମଳ—(ପଦ୍ମ) ଯୁଗଳ ଉପରେ ଚନ୍ଦ୍ର (ନଖ)ର ମାଳା ସୁଶୋଭିତ, ତା ଉପରେ ତରୁଣ-ତମାଳ ବୃକ୍ଷ (ଶ୍ୟାମଙ୍କ ଶରୀର) ଉତ୍ପନ୍ନ ହୋଇଅଛି ।୧। ସେହି ତମାଳ-ବୃକ୍ଷକୁ ବିଦ୍ୟୁଲ୍ଲତା (ପୀତାମ୍ବର) ଆଚ୍ଛାଦିତ କରିଥିଲା ଓ ଯମୁନା-ତଟରେ ସେହି ତମାଳ-ବୃକ୍ଷ ଧୀରେ ଧୀରେ ଚାଲୁଥିଲା । ସେହି ବୃକ୍ଷର ଶାଖା (ବାହୁ)ର ଅଗ୍ରଭାଗ(ନଖ) ଚନ୍ଦ୍ର ପଂକ୍ତି ସଦୃଶ ଓ ସେହି ଚନ୍ଦ୍ର (ନଖ)ର କାନ୍ତି ନବ-ପଲ୍ଲବ ସଦୃଶ ଅରୁଣ ବର୍ଣ୍ଣ ।୨। ବିମଳ ବିମ୍ବଫଳ-ଯୁଗଳ (ଅଧରୋଷ୍ଠ)ର ବିକାଶ ହୋଇଛି ଓ ତା ଉପରେ ସ୍ଥିରଭାବେ ଶୁକ (ନାକ) ବାସ କରୁଅଛି । ଏହି ଶୁକ ଉପରେ ଚଞ୍ଚଳ ଖଞ୍ଜନ ଯୁଗ୍ମ (ନେତ୍ର-ଯୁଗଳ) ତା ଉପରେ ସର୍ପିଣୀ (କୁନ୍ତଳ-ବେଣି) ମଧ୍ୟ ମୟୂର-ପୁଚ୍ଛଦ୍ୱାରା ଆଚ୍ଛାଦିତ ହୋଇଅଛି ।୩। ହେ କ୍ରୀଡ଼ାଶୀଳେ ସଖି ! ପୁନର୍ବାର ଦେଖିଲା ମାତ୍ରକେ ସେ ମୋର

ଜ୍ଞାନକୁ ଅପହରଣ କରିନେଲି । ଏହାର କାରଣ କଣ କହ ? କବି ବିଦ୍ୟାପତି କହୁଛନ୍ତି—ଏହି ରସର ମର୍ମ ଉତ୍ତମ ପୁରୁଷକୁ ଭଲଭାବେ ଜ୍ଞାତ ହେବ ।୪।

( ୪ )

କି କହବ ହେ ସଖି ! ଇହ ଦୁଖ ଓର
ବାଁସି-ନିସାସ ଗରଲ ତନୁ ଭୋର ।
ହଠ ସଯଁ ପଇସଏ ସ୍ରବନକ ମାଝ
ତାହି ଖନ ବିଗଲିତ ତନ ମନ ଲାଜ ।୧।

ବିପୁଲ-ପୁଲକ ପରିପୂରଏ ଦେହ
ନୟନ'ନ ହେରି ହେରଏ ଜନୁ କେହ
ଗୁରୁଜନ ସମୁଖହିଁ ଭାବ ତରଙ୍ଗ
ଜତନହି ବସନ ଝାଁପି ସବ ଅଂଗ ।୨।

ଲହୁ ଲହୁ ଚରନ ଚଲଏ ଗୃହ ମାଝ
ଆଜ୍ ଦଇବ ବସି ରାଖଲ ଲାଜ ।
ତନୁ ମନୁ ବିବସ ଖସଏ ନିବି-ବଂଧ
କି କହବ ବିଦ୍ୟାପତି ରହୁ ଧଂଦ ।୩।

---

ଅର୍ଥ—ଆଲୋ ସଖି ! ଏହି ଦୁଃଖର ସୀମା କପରି ବର୍ଣ୍ଣନା କରିବି ? ମୁରଲୀର ନିଶ୍ୱାସ-ରୂପ ଗରଳରେ ଶରୀର ଜର ଜର ହେଉଛି । ଏହି ମୁରଲୀର ଶବ୍ଦ ଅନିଚ୍ଛା ସତ୍ତ୍ୱେ କର୍ଣ୍ଣ ମଧ୍ୟରେ ପ୍ରବେଶ କରୁଛି ଓ ତତ୍‌କ୍ଷଣାତ୍ ଦେହ ଓ ମନର ଲଜ୍ଜା ଅପସୃତ ହେଉଛି ।୧। ଅତ୍ୟଧିକ ରୋମାଞ୍ଚରେ ଶରୀର ପରି ପୂର୍ଣ୍ଣ ହୋଇଯାଏ । କାଳେ କେହି ଦେଖି ନେବ ଏହି ଆଶଙ୍କାରେ ଆଖି ଖୋଲି ମଧ୍ୟ (ତାଙ୍କୁ) ଦେଖେ ନାହିଁ । ମନରେ ଭାବର ତରଙ୍ଗ ଉଠେ, କିନ୍ତୁ ଗୁରୁଜନ ସମ୍ମୁଖରେ ଥିବାରୁ, ଯତ୍ନ ସହକାରେ ସର୍ବାଙ୍ଗକୁ ମୁଁ ଆବୃତ କରିନେଲି ।୨। ମନ୍ଦ ମନ୍ଦ ଚରଣ-ବିନ୍ୟାସ କରି ମୁଁ ଗୃହମଧ୍ୟରେ ପ୍ରବେଶ କଲି, ଦୈବଯୋଗରେ ବିଧାତା ଆଜି ମୋର ଲଜ୍ଜା ରଖିଲେ । ତନ ଓ ମନ ବିବଶ ଥିଲା ଓ ନୀବୀ-ବନ୍ଧନ ମଧ୍ୟ ଶିଥିଳ

ହୋଇଯାଇଥିଲା। କବି ବିଦ୍ୟାପତି କହୁଛନ୍ତି—କିଏ ଆଉ କହିବ ? ମୁଁ ସ୍ୱୟଂ ହୃଦରେ ପଡ଼ିଅଛି ।୩।

( ୫ )

ଏକ ଦିନ ହେରି-ହେରି ହସି-ହସି ଜାୟ
ଅରୁ ଦିନ ନାମ ଧଏ ମୁରଲି ବଜାୟ ।
ଆଜୁ ଅତି ନିକରେ କଏଲ ପରିହାସ
ନ ଜାନଏ ଗୋକୁଲ କର ବିଲାସ ।୧।
ସାଜନି ଓ ନାଗର-ସାମରାଜ
ମୂଲ ବିନୁ ପରଧନ ମାଁଗ ବେଆଜ ।
ପରିଚୟ ନହି ଦେଖି ଆନକ କାଜ,
ନ କରଏ ସମ୍ଭ୍ରମ ନ କରଏ ଲାଜ ।୨।
ଅପନ ନିହାରି ନିହାରି ତନୁ ମୋର
ଦେହ ଆଲିଙ୍ଗନ ଭଏ ବିଭୋର ।
ଖନ-ଖନ ବୈଦଗଧି କଲି ଅନୁପାମ
ଅଧିକ ଉଦାର ଦେଖିଅ ପରିଣାମ ।
ବିଦ୍ୟାପତି କହ ଆରତି ଓର
ବୁଝିଓ ନ ବୁଝଏ ଏଇ ରସ ମୋର ।୩।

---

ଅର୍ଥ—(ହେ ସଖି ! ସେ ଶ୍ରୀକୃଷ୍ଣ) ପ୍ରଥମ ଦିବସରେ ତ କେବଳ ଦେଖି ୨ ଓ ସ୍ୱୟଂ ହସି ହସି ଚାଲିଗଲେ । ତା ପରଦିନ ହେ ମୋ ନାମଧରି ମୁରଲୀ ବଜାଇଲେ, ଆଜି ଅତ୍ୟନ୍ତ ନିକଟକୁ ଆସି ପରିହାସ କଲେ, ମୁଁ ଜାଣି ପାରୁ ନାହିଁ । ଗୋକୁଳରେ କାହାର ବିଳାସ ଚାଲିଛି ।୧। ହେ ସଜନି ! ସେହି ଚତୁର ସମ୍ରାଟ,ମୂଳଧନ ନ ଦେଇ (ସୀମନ୍ତରେ ସିନ୍ଦୂର ନ ଦେଇ) ପରଧନରେ ସୁଧ (ରତିସୁଖ) ମାଗୁଅଛି, ତାଙ୍କ ସଙ୍ଗରେ ମୋର ବିଶେଷ ପରିଚୟ ନାହିଁ । ସେ ଅନ୍ୟର କାର୍ଯ୍ୟ ଦେଖୁ ନାହାନ୍ତି । ତାଙ୍କର ସଙ୍କୋଚ ନାହିଁ, କି ଲଜ୍ଜାମଧ୍ୟ ନାହିଁ ।୨। ସେ ନିଜ ଶରୀରକୁ ଦେଖି ପୁଣି ମୋର ଅଙ୍ଗକୁ ଦେଖୁଛନ୍ତି । ଆଲିଙ୍ଗନ ଦେଇ ବିହ୍ୱଳ ହୋଇ ପଡ଼ୁଛନ୍ତି । ତାଙ୍କର

ପ୍ରତିକ୍ଷଣରେ ସେ ବିଦଗ୍ଧଶିପୃଶ୍ରୀ ଅନୁପମ ଭାବଭଙ୍ଗୀ ପ୍ରଦର୍ଶନ କରୁଛନ୍ତି । ବର୍ତ୍ତମାନ ଅତ୍ୟନ୍ତ ଉଦାର ଜଣା ଯାଉଛନ୍ତି, ଜଣାନାହିଁ ପରିଣାମ କିପରି ହେବ ? ବିଦ୍ୟାପତି କହୁଛନ୍ତି-ଏ ବେଦନାର ସୀମାକୁ ରମଣୀର ବିହ୍ୱଳ (ଶ୍ରୀକୃଷ୍ଣ) ବୁଝି ମଧ୍ୟ, ବୁଝୁ ନାହାନ୍ତି ।୩।

## ପୂର୍ବରାଗ, ମିଳନାଳାପ ଓ ପରାମର୍ଶାଦି

( ୧ )

ଧନି-ଧନି ରମଣି ଜନମ ଧନି ତୋରଂ
ସବ ଜନ କାହ୍ନୁ କାହ୍ନୁ କରି
ଝୁରଏ ସେ ତୁଅ ଭାବ ବିଭୋର ।୧।

ଚାତକ ଚାହି ତିଆସଲ
ଅମ୍ବୁଦ ଚକୋର ଚାହି ରହୁ ଚନ୍ଦା
ତରୁ ଲତିକା ଅବଲମ୍ବନ କରି ଏ
ମଝୁ ମନ ଲାଗଲ ଧନ୍ଦା ।୨।

କେସ ପସାରି କବେ ତହୁଁ ରାଖଲି
ଉର ପର ଅମ୍ବର ଆଧା
ସେ ସବ ସୁମରି କାହ୍ନୁ ଭେଲ ଆକୁଳ
କହ ଧନି ଇଥେ କି ସମାଧା ।୩।

ହଁସଇତ କବ ତୁହୁ ଦସନ ଦେଖାଏଲି
କରେ କର ଜୋରହି ମୋର
ଅଲଖିତ ଦିଠି କବ ହୃଦୟ ପସାରଲି
ପୁନ ହେରି ସଖି କର କୋର ।୪।

ଏତହୁ ନିଦେସ କହଲ ତୋହେ ସୁନ୍ଦରି
ଜାନି ତୋହେ କରହ ବିଧାନ
ହୃଦୟ ପୁତଲି ତୁହୁ ସେ ସୁନ କଳେବର
କବି ବିଦ୍ୟାପତି ଭାନ ।୫।

ଅର୍ଥ—ହେ ସୁନ୍ଦରୀ ! ତୁ ଧନ୍ୟ ଓ ତୋର ଜନ୍ମ ମଧ୍ୟ ସଫଳ, କାରଣ ସମସ୍ତ ଲୋକେ "କାହ୍ନୁ କାହ୍ନୁ" ବୋଲି ଯାହାପାଇଁ ଝୁରୁଛନ୍ତି, ସେହି କାହ୍ନୁ ତୋହର ପ୍ରେମରେ ବିହ୍ୱଳ ହୋଇଛନ୍ତି ।୧। ତୃଷାକୁଳ ମେଘ ଚାତକର ଅଭିଳାଷ କରୁଅଛି । ଚନ୍ଦ୍ରମା ମଧ୍ୟ ଚକୋରର ଅଭିଳାଷ କରୁଅଛି ଓ ବୃକ୍ଷ ଲତିକାକୁ ଅବଲମ୍ବନ କରୁଅଛି । (ଏହିସବୁ ବିପରୀତ ବିଷୟ ଦେଖି) ମୋ ମନରେ ଦ୍ୱନ୍ଦ (ସନ୍ଦେହ) ଜାତ ହେଉଛି । ଅର୍ଥାତ୍ କୃଷ୍ଣଙ୍କ ପାଇଁ ତୋର କାତର ହେବାଟା ସମ୍ଭବ, କିନ୍ତୁ ତୋପାଇଁ ଶ୍ରୀକୃଷ୍ଣଙ୍କ ଉଦ୍‌ବିଗ୍ନ ହେବାଟା ମୋ ବିବେଚନାରେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ଜନକ ବିଷୟ ।୨। ତୁ ଯେତେବେଳେ କେଶ-ଗୁଚ୍ଛକୁ ଉନ୍ମୁକ୍ତ କରି ଓ ବକ୍ଷ ସ୍ଥଳର ଅର୍ଦ୍ଧଭାଗରେ ବସ୍ତ୍ରାଞ୍ଚଳ ଧାରଣ କରିଥିଲୁ, ସେତେବେଳେ କାହ୍ନୁ ତୋତେ ଦେଖିଥିଲେ । ବର୍ତ୍ତମାନ କାହ୍ନୁ ସେହି ସବୁ ବିଷୟ ମନେ ପକାଇ ବ୍ୟାକୁଳ ହେଉଛନ୍ତି । ହେ ସୁନ୍ଦରି ! କହ; ଏହାର ସମାଧାନ କଣ ଅଛି ? ।୩। (ଆଉ ମଧ୍ୟ) ତୁ କେଉଁଦିନ ହସି ହସି ନିଜର ଦଶନ ପ୍ରଦର୍ଶନ କରିଥିଲୁ, ପୁଣି କେବେ ବେନି ହସ୍ତକୁ ଏକତ୍ରିତ କରି ପଛକୁ ମୁହଁ ବୁଲାଇ ତାଙ୍କୁ ଚାହିଁଥିଲୁ ଓ ତାଙ୍କୁ ଦେଖି ସଖୀକୁ ଆଲିଙ୍ଗନ କରିଥିଲୁ ।୪। ତୋ ସମ୍ମୁଖରେ ଏତିକି ମାତ୍ର ନିର୍ଦ୍ଦେଶ ଦେଲି, ହେ ସୁନ୍ଦରି, ବର୍ତ୍ତମାନ ତୁ ବୁଝି ସୁଝି ଏହାର ବିଧାନ (ଉପଚାର) କରିବୁ । କାରଣ ତୁମେ ହେଉଛ ତାଙ୍କର ଆରାଧ୍ୟଦେବୀ, ତୁମ ବିନା ସେ ଶୂନ୍ୟ, ବିଦ୍ୟାପତି କହୁଛନ୍ତି—ମୋତେ ଏହିପରି ପ୍ରତୀତ ହେଉଛି ।୫।

( ୨ )

ଜୀବନ ଚାହି ଯୌବନ ବଡ଼ରଙ୍ଗ
ତବେ ଯୌବନ ଜବ ସୁପୁରୁଷ ସଂଗ
ସୁପୁରୁଷ ପ୍ରେମ କବହୁ ନହି ଛାଡ଼ି
ଦିନେ ଦିନେ ଚାନ୍ଦକଳା ସମ ବାଢ଼ି ।୧।

ତୁହୁ ଜୈସେ ନାଗରୀ କାନୁ ରସବନ୍ତ
ବଡ଼ ପୁଣ୍ୟେ ରସବତୀ ମିଲେ ରସବନ୍ତ ।
ତୁ ଯଦି କହସି କରିଓ ଅନୁସଙ୍ଗ
ଚୌରି ପୀରିତି ହୋଯୁ ଲଖ ଗୁଣ ରଙ୍ଗ ।୨।

ସୁପୁରୁଷ ଏସନ ନାହି ଜଗମାଝ
ଆର ତାହେ ଅନୁରତ ବରଜ ସମାଜ ।
ବିଦ୍ୟାପତି କହେ ଇଥେ ନାହି ଲାଜ
ରୂପ-ଗୁଣବତିକା ଇହ ବଡ଼ କାଜ ।୩।

---

ଅର୍ଥ—ଜୀବନରେ ବିଶେଷଭାବେ ରସମୟ ଯୌବନର ପ୍ରୟୋଜନୀୟତା ରହିଛି । ଯୌବନ ମଧ୍ୟ ସେତେବେଳେ ସାର୍ଥକ ହୁଏ, ଯେତେବେଳେ ସୁପୁରୁଷର ସଙ୍ଗଲାଭ ଘଟେ । ସୁପୁରୁଷର ପ୍ରେମ କେବେହେଲେ ନ୍ୟୂନ ହୁଏ ନାହିଁ । ବରଂ ପ୍ରତିଦିନ ଚନ୍ଦ୍ରକଳା ସଦୃଶ ବୃଦ୍ଧି ହେଉଥାଏ ।୧। ହେ ନାଗରି ! ତୁ ଯେପରି ସୁରସିକା, କାହ୍ନୁ ମଧ୍ୟ ସେହିପରି ରସବନ୍ତ (ସୁରସିକ) । ଅତ୍ୟଧିକ ପୁଣ୍ୟ ଥିଲେ ରସବତୀର ମିଳନ ରସବନ୍ତ ସଙ୍ଗରେ ଘଟିଥାଏ । ତୁ ଯଦି ଅନୁଗ୍ରହ କରି କହୁ ବା ଅନୁମତି ଦେଉ, ତେବେ ଗୁପ୍ତପ୍ରଣୟରେ ଲକ୍ଷ୍ୟଗୁଣ ଅଧିକ ଆନନ୍ଦ ହୁଏ ।୨। ଏହି ସଂସାର ମଧ୍ୟରେ ଏପରି ସୁପୁରୁଷ ଆଉ ନାହିଁ । ଆଉ ମଧ୍ୟ ବ୍ରଜ-ସମାଜ ଏହାଙ୍କଠାରେ ଅନୁରକ୍ତ । ବିଦ୍ୟାପତି କହୁଛନ୍ତି—ଏ ବିଷୟରେ ଲଜ୍ଜାର ବିଷୟ କିଛି ନାହିଁ, ରୂପ ଗୁଣ ସମ୍ପନ୍ନା ପକ୍ଷରେ ଏ ବିଷୟ ଏକ ମହାନ କର୍ତ୍ତବ୍ୟ ।୩।

( ୩ )

ସୁନ ସୁନ ଗୁନବତି ରାଧେ
ମାଧବ ବଧିଲେ କି ସାଧବି ସାଧେ
ଚାନ୍ଦ ଦିନହି ଦିନ ହୀନା
ସେ ପୁନ ପାଲଟି ଖନେ ଖନେ ଖୀନା ।୧।
ଅଙ୍ଗୁରି ବଲୟା ପୁନ ଫେରି
ଭାଙ୍ଗି ଗଢ଼ାୟବ ବୁଝି କତ ବେରି
ତୋହାରି ଚରିତ ନାହି ଜାନି
ବିଦ୍ୟାପତି ପୁନ ସିରେ କରଦାନି ।୨।

---

ଅର୍ଥ—ହେ ଗୁଣବତୀ ରାଧିକେ ! ଶୁଣ, ମାଧବଙ୍କ ବଧଦ୍ୱାରା ତୁ କେଉଁ ଅଭିଳାଷକୁ ପୂର୍ଣ୍ଣ କରିବୁ । ଚନ୍ଦ୍ର ଯିନା ଦିନକୁ ଦିନ ହ୍ରାସକୁ ପ୍ରାପ୍ତ

ହୁଅନ୍ତି, କିନ୍ତୁ ଏ ମାଧବ (ତୋ ବିରହରେ) କ୍ଷଣକୁକ୍ଷଣ କ୍ଷୀଣ ହେଉଛନ୍ତି । ।୧। ତାଙ୍କର ଅଙ୍ଗୁରୀୟକ (ମୁଦି) ଓ ବଳୟ ବାରମ୍ବାର ଢିଲା ହୋଇ ଯାଉଛି । ପ୍ରକୃତ ଅନେକଥର ସେ ସବୁକୁ ଭାଙ୍ଗି ପୁଣି ଗଢ଼ାଇବାକୁ ହେବ । ତୋର ଚରିତ ଜାଣି ହେଉନାହିଁ ? ପୁଣି ବିଦ୍ୟାପତି (ଅନୁଶୋଚନ କରି) ମସ୍ତକରେ କରାଘାତ କରୁଛନ୍ତି ।୨।

( ୪ )

ଏ ଧନି କର ଅବଧାନ
ତୋ ବିନେ ଉନମତ କାନ ।
କାରଣ ବିନୁ ଖନେ ହାସ
କି କହଏ ଗଦଗଦ ଭାଷ ।୧।

ଆକୁଲ ଅତି ଉତରୋଲ
ହା ଧିକ ହା ଧିକ ବୋଲ
କାଁପଏ ଦୁରବଲ ଦେହ
ଧରଇ ନା ପାରଇ କେହ
ବିଦ୍ୟାପତି କହ ଭାଖୀ
ରୂପନାରାୟଣ ସାଖୀ ।୨।

---

ଅର୍ଥ—ହେ ସଖି ! ତୋ ବିରହରେ କାହ୍ନୁ ବର୍ତ୍ତମାନ ଉନ୍ମତ୍ତ (ପାଗଳ) ହୋଇଛନ୍ତି,ଏ କଥାକୁ ତୁ ଅବଧାନ କର । ବିନା କାରଣରେ ହାସ୍ୟ କରୁଛନ୍ତି ଓ ଗଦ୍‌ଗଦ ସ୍ୱରରେ ଅଲକ୍ଷିତ ବ୍ୟକ୍ତି ସହିତ ଭାଷଣ କରୁଛନ୍ତି ।୧। ପ୍ରାଣରେ ବ୍ୟାକୁଳିତ ହୋଇ ଉଚ୍ଚସ୍ୱରରେ ଅସ୍ପଷ୍ଟ ଶବ୍ଦ "କରୁଛନ୍ତି ଓ ହା ଧିକ୍ ହା ଧିକ୍" ବୋଲି କହୁଛନ୍ତି । ଶରୀର ଦୁର୍ବଳ ହୋଇ କମ୍ପିତ ହେଉଛି, ଓ କେହି ହେଲେ ଧରିରଖି ପାରୁନାହାନ୍ତି । ବିଦ୍ୟାପତି କହୁଛନ୍ତି—ଏ ବିଷୟରେ ରାଜା ରୂପନାରାୟଣ ହେଉଛନ୍ତି ସାକ୍ଷୀ ।୨।

---

( ୫ )

ସୁନୁ-ସୁନୁ ଏ ସଖି ବଚନ ବିସେସ
ଆଜୁ ହମ ଦେବ ତୋହେ ଉପଦେସ ।
ପହିଲହି ବୈଠବି ସୟନକ-सीम
ହେରଇତ ପିୟା ମୁଖ ମୋଡ଼ବି ଗୀମ । ୧ ।
ପରସଇତ ଦୁହୁ କର ବାରବି ପାନ
ମୌନ-ରହବି ପହୁ କରଇତ ବା'ନ ।
ଜବ ହମ ସୋଂପବ କରେ କର ଆପି
ସାଧସ ଧରବି ଉଲଟି ମୋହେ କାମ୍ପି ।
ବିଦ୍ୟାପତି କହ ଇହ ରସ ଠାଠ
ଭୟେ ଗରୁକାମ ସିଖାଓବ ପାଠ । ୨ ।

---

ଅର୍ଥ - (ମିଳନ-ମନ୍ଦିରକୁ ଯିବା ପୂର୍ବରୁ ଶ୍ରୀରାଧାଙ୍କୁ ତାଙ୍କ ସଖୀଗଣ ବୁଝାଉଛନ୍ତି) ହେ ସଖି ! ଶୁଣ, ଏହି ବଚନକୁ ବିଶେଷ ଭାବେ ଶୁଣ, ଆଜ ଆମେ ତମକୁ ଉପଦେଶ ଦେବୁ । (ମିଳନ-ମନ୍ଦିରକୁ ଯାଇ) ତୁମେ ଶଯ୍ୟାର ଏକ ପାର୍ଶ୍ୱରେ ପ୍ରଥମେ ଉପବେଶନ କରିବ ଓ ଯେତେବେଳେ ପ୍ରିୟତମ ତୁମ ମୁଖକୁ ଅବଲୋକନ କରିବେ, ସେତେ ବେଳେ ତୁମେ ନିଜ ଗ୍ରୀବାକୁ ଅପର ପାର୍ଶ୍ୱକୁ ମୋଡ଼ିଦେବ । ୧ । ଯେତେବେଳେ ପ୍ରିୟ ତୁମ ଶରୀରକୁ ସ୍ପର୍ଶ କରିବେ, ସେତେବେଳେ ନିଜ ଉଭୟ ହସ୍ତରେ ତାଙ୍କ ହସ୍ତକୁ ରୋକିବ, ଓ ପ୍ରିୟତମ କିଛି କଥୋପକଥନ କଲେ ତୁମେ ମୌନ ରହିବ । ଯେତେବେଳେ ଆମେ ତୁମର ହସ୍ତକୁ ତାଙ୍କ ହସ୍ତରେ ସମର୍ପଣ କରିବୁ, ସେତେବେଳେ ଭୟ-କମ୍ପିତ ହୋଇ, ଓଲଟି ପଡ଼ି ଆମକୁ ଧରି ପକାଇବ, ବିଦ୍ୟାପତି କହୁଛନ୍ତି—ଏହି ରସର ରୀତିକୁ, କାମ ସ୍ୱୟଂ ଗୁରୁ ହୋଇ ତୁମକୁ ସବୁ ପାଠ ପଢାଇ ଦେବେ । ୨ ।

( ୬ )

ଏ ଧନି କମଲିନି ସୁନୁ ହିତ ବାନି
ପ୍ରେମ କରବି ଅବ ସୁପୁରୁଷ ଜାନି ।

ସୁଜନକ ପ୍ରେମ ହେମ ସମତୂଲ
ଦହଇତ କନକ ଦିଗୁନ ହୋଇ ମୂଲ ।୧।
ଟୂଟଇତ ନାହିଁ ଟୂଟ ପ୍ରେମ ଅଦ୍‌ଭୂତ
ଜଇସନ ବଢ଼ଏ ମୃନାଲକ ସୂତ ।
ସବହୁ ମତଂଗଜ ମୋତି ନହି ଜାନ
ସକଲ କଂଠ ନହି କୋଇଲ ବାନ । ୧ ।
ସକଲ ସମୟ ନହି ଋତୁ ବସଂତ
ସକଲ ପୁରୂଷ-ନାରି ନହି ଗୁଣବଂତ
ଭନଇ ବିଦ୍ୟାପତି ସୁନୁ ବର ନାରି
ପ୍ରେମକ ରୀତି ଅବ ବୁଝହ ବିଚାରି । ୩ ।

---

ଅର୍ଥ—ହେ ସୁନ୍ଦରି ! ହେ ପଦ୍ମିନି ! ହିତ ବଚନକୁ ଶ୍ରବଣ କର, (ମୁଁ ଯାହା କହୁଛି ସେ ସବୁ ତୁମର ହିତପାଇଁ) ଯଦି କେବେ ପ୍ରେମ କରିବ, ତେବେ ପ୍ରଥମେ ସତ୍‌ପୁରୁଷକୁ ଚିହ୍ନି ନେବ । ସତ୍‌ପୁରୁଷର ପ୍ରେମ ସୁବର୍ଣ୍ଣ ସଦୃଶ । ଦଗ୍‌ଧ ହେବା ଦ୍ୱାରା ସୁବର୍ଣ୍ଣର ମୂଲ୍ୟ ଦ୍ୱିଗୁଣ ହୁଏ,(ବିପତ୍ତି ସମୟରେ ସଜ୍ଜନର ପ୍ରେମ ଅଧିକ ଉଜ୍ଜ୍ୱଳ ହୁଏ) । ୧ । ସଜ୍ଜନର ଅଦ୍‌ଭୁତ ପ୍ରେମକୁ ଭଙ୍ଗ କଲେ ମଧ୍ୟ,ଭଙ୍ଗ ନ ହୋଇ ମୃଣାଳ-ସୂତ୍ର ସଦୃଶ ବଢ଼ୁଥାଏ । ପ୍ରତ୍ୟେକ ଗଜ ମସ୍ତକରେ ମୁକ୍ତା ନଥାଏ ଓ ସକଳ ଜନଙ୍କ କଣ୍ଠରେ କୋକିଳର କାକଳୀ (ମଧୁରସ୍ୱନ ନ ଥାଏ । ୨ । ପ୍ରତ୍ୟେକ ସମୟରେ ବସନ୍ତ ଋତୁ ନ ଥାଏ ଓ ପ୍ରତ୍ୟେକ ନରନାରୀ ଗୁଣବନ୍ତ ହୁଅନ୍ତି ନାହିଁ । ବିଦ୍ୟାପତି କହୁଛନ୍ତି—ହେ ଶ୍ରେଷ୍ଠ ରମଣି ! ଶୁଣ, ବର୍ତ୍ତମାନ ପ୍ରେମର ରୀତିକୁ ଜାଣିନିଅ ଓ ବୁଝିନିଅ । ୩ ।

( ୭ )

ସୁନଲେ ରଜାର ଝି
ତୋର କହିତେ ଆସିଅଛି
କାନୁ ଜନୁ ଧନ, ଫଗଣେ ବଧିଲ
ଏ କାଜ କରିଲ କି ? ।୧।

କେଳି ଅବସାନ କାଳେ
ଚାହେ ଦରସିଝା ମୁରଛି ହାସିଝା
ଧରିଲା ସଖୀର ଗଲେ ।୨।

ଦେଖାଝା ବଦନ ଚୃନ୍ଦେ
ତାହେ ଫେରିଲା ବିସମ ଫାନ୍ଦେ
ଭୁହୁ ଭୁରତେ ଅଓ୍ୱଳ ଲଖିତେ ନାରିଲ
ଓଇ ଓଇ କରି କାନ୍ଦେ ।୩।

ତାହେ ହୃଦୟ ଦରସି ଥୋଇ
ମନ କରିଲ ଚୋର

ବିଦ୍ୟାପତି ସୁନହ୍ନି ସୁନ୍ଦରି
କାନୁ ଜଆବେ କି କରି ।୪।

---

(ଏହି ପଦାବଳୀ ସୁଖବୋଧ ହୋଇଥିବା ହେତୁ, ଏହାର ଅର୍ଥ ଆବଶ୍ୟକ ନୁହେ)

( ୮ )

ସୁନ ସୁନ ମୁଗଧିନି ମଝୁ ଉପଦେଶ
ହାମ ସିଖାଝବ ଚରିତ ବିଶେଷ ।
ପହିଲହି ଅଲକା ତିଲକ କରି ସାଜ
ବଙ୍କିମ ଲୋଚନେ କାଜର ରାଜ ।୧।
ଯାଓବି ବସନେ ଝାଁପି ସବ ଅଙ୍ଗ
ଦୂରେ ରହବି ଜନୁ ବାତ ବିଭଙ୍ଗ ।
ସଜନି ପହିଲହି ନିଅରେ ନ ଯାବି
କୁଟିଲ ନୟନେ ଧନି ମଦନ ଜଗାବି ।୨।
ଝାଁପବି କୁଚ, ଦରସାଝବି କନ୍ଧ
ଦୃଢ଼କରି ବାନ୍ଧବି ନୀବିହିକ ବନ୍ଧ ।

ମାନ କରବ କଛୁ ରାଖବ ଭାବି
ରାଖତ ରସ ଜନୁ ପୁନ ପୁନ ଆବ ।୩।
ଭଣୟେ ବିଦ୍ୟାପତି ପ୍ରଥମକ ଭାବ
ଯେ ଗୁଣବନ୍ତ ସୋଇ ଫଲ ପାବ ।

---

ଅର୍ଥ —ହେ ମୁଗ୍ଧେ ସୁନ୍ଦରି ! ଶୁଣ, ମୋର ଉପଦେଶକୁ ଶୁଣ, ଆମେ ବିଶେଷଭାବରେ ପ୍ରାସଙ୍ଗିକ-ଚରିତ ବିଷୟରେ ଶିକ୍ଷା ପ୍ରଦାନକରିବୁ । ସର୍ବପ୍ରଥମ ତୁମେ ଚୂର୍ଣ୍ଣକୁନ୍ତଳର ବିନ୍ୟାସ କରି ତହିଁରେ ତିଳକ ସଜ୍ଜିତ କରିବ ଓ ବଙ୍କ-ଲୋଚନ ଯୁଗଳକୁ କଜ୍ଜଳରେ ରଞ୍ଜିତ କରିବ ।୧। ବସନ ଦ୍ୱାରା ସର୍ବାଙ୍ଗକୁ ଆଚ୍ଛାଦିତ କରି, ତାଙ୍କ ନିକଟକୁ ଯିବୁ ଓ ବାଚାଳତା ସଦୃଶ ଦୂରରେ ଅବସ୍ଥାନ କରିବୁ । ହେ ସଜନି ! ପ୍ରଥମରୁ ନିକଟକୁ ଯିବୁ ନାହିଁ,କେବଳ କୁଟିଳ କଟାକ୍ଷପାତ କରି ତାଙ୍କର ମଦନକୁ ଜାଗ୍ରତ କରିବୁ ।୨। ସ୍ତନଯୁଗଳକୁ ଆବୃତ କରି ରଖିବୁ ଓ ସ୍କନ୍ଧଭାଗକୁ ପ୍ରଦର୍ଶନ କରିବୁ । ନୀବିବନ୍ଧ (ବସ୍ତ୍ରଗ୍ରନ୍ଥି)କୁ ଦୃଢ଼ଭାବରେ ରଖିବୁ । କିଞ୍ଚିତ୍ ଅଭିମାନ ପ୍ରଦର୍ଶନ ପୂର୍ବକ ଅଳ୍ପ ଅନୁରାଗ-ପ୍ରଦର୍ଶନ ମଧ୍ୟ କରିବୁ, ଏପରି ଶୃଙ୍ଗାରରସକୁ ରକ୍ଷା କରିବୁ ଯେପରି ସେ ବାରମ୍ବାର ଆସିବେ ।୩। ବିଦ୍ୟାପତି କହୁଛନ୍ତି ଏହା ହେଉଛି ପ୍ରାଥମିକ ଭାବପ୍ରଦର୍ଶନରୀତି । ଯେ ଗୁଣବନ୍ତ,ସେହି ସାଫଲ୍ୟଲାଭ କରିବ ।

( ୯ )

ନା ଜାନି ପ୍ରେମରସ ନାହି ରତିରଙ୍ଗ
କେମନେ ମିଲବ ଧନି ସୁପୁରୁଷ ସଙ୍ଗ ।
ତୋହାରି ବଚନେ ଯଦି କରବ ପୀରିତି
ହାମ ସିସୁମତି ତାହେ ଅପଯସ ଖ୍ୟାତି ।୧।
ସଖି ହେ ହାମ ଅବ କି ବଲବ ତୋୟ
ତା ସନେ ରଭସ କବହୁ ନାହି ହୋୟ ।
ସୋ ବର ନାଗର ନବ ଅନୁରାଗ
ପାଁଚ ସରେ ମଦନ ମନୋରଥ ଜାଗ ।୨।

ଦରଶେ ଆଲିଙ୍ଗନ ଦେୟବ ମୋଇ
ଜୀଉ ନିକସବ ଯବ ରାଖବ କୋଇ ?
ବିଦ୍ୟାପତି କହ ମିଛଇ ତରାସ
ସୁନହ ଐସେ ରହ ତାକ ବିଲାସ ।୩।

---

ଅର୍ଥ—ହେ ସଖି ! ମୁଁ ପ୍ରେମରସକୁ ଜାଣେ ନାହିଁ, ବା ରତିରଙ୍ଗକୁ ମଧ୍ୟ ଜାଣେ ନାହିଁ, ସେହି ସୁପୁରୁଷ ସଙ୍ଗରେ ମୋର ମିଳନ କିପରି ଆବା ହେବ ? ତୋର କଥା ଅନୁସାରେ ଯଦି ପ୍ରୀତି ଆରମ୍ଭ କରିବି, ତେବେ ବିବେକରହିତା ଓ ଅପରିଶିକ୍ଷିତା ମୋର କି ଦଶା ହେବ ? ତୁ ନିଜେ ଭାବିଚିନ୍ତି କହ ।୧। ହେ ସଖି ! ମୁଁ ଏବେ ତୋତେ ବିଶେଷ କହିବି ? କିଅଣ ତାଙ୍କ ସହିତ ରହସ୍ୟ କେବେ ହେବାର ନୁହେଁ । ସେ ନବ ଅନୁରାଗ ଯୁକ୍ତ ନାଗରଶ୍ରେଷ୍ଠ ଓ ମଦନର ପଞ୍ଚବାଣଦ୍ୱାରା ତାଙ୍କର ଅଭିଲାଷ ମଧ୍ୟ ଉଦ୍ଦୀପିତ ହୋଇଛି ।୨। ସେ ଦର୍ଶନ ମାତ୍ରକେ ଗାଢ଼ାଲିଙ୍ଗନ କରିବେ, ସେତେବେଳେ ଯଦି ମୋର ପ୍ରାଣବାୟୁ ବାହାରି ଯାଏ ତେବେ କିଏ ସେ ରକ୍ଷା କରିବ । ବିଦ୍ୟାପତି କହୁଛନ୍ତି—ଏପରି ଭୟ କରିବା ହେଉଛି ବୃଥା; ତାଙ୍କର ବିଳାସ ଏପରି ନୁହେ ।୩।

( ୧୦ )

ପରିହର ଏ ସଖି, ତୋହେ ପରନାମ
ହମ ନହି ଜାଏବ ସେ ପିୟା-ଠାମ ।
ବଚନ-ଚାତୁରି ହମ କଛୁ ନହି ଜାନ
ଇଙ୍ଗିତ ନ ଜାନଏ ନ ବୁଝଏ ମାନ ।୧।
ସହଚରି ମିଲି ବନାଏବ ଭେସ
ବାନ୍ଧଏ ନ ଜାନଏ ଅପନ କେସ ।
କଭୁ ନହି ସୁନଏ ସୁରତକ ବାତ
କଇସେ ମିଲବ ହମ ମାଧବ ସାଥ ।୨।

ସେ ବରନାଗର ରସିକ ସୁଜାନ
ହମ ଅବଲା ଅତି ଅଲପ ଗେଆନ ।
ବିଦ୍ୟାପତି କହ କି ବୋଲବ ତୋଏ
ଆଜୁକ ମିଲନ ସମୁଚିତ ହୋଏ । ୩ ।

---

ଅର୍ଥ—(ସଖୀମାନଙ୍କ କଥା ଶୁଣି, ରାଧା ଯେତେବେଳେ ବିରକ୍ତ ହୋଇଉଠୁଛନ୍ତି ସେତେବେଳେ କହୁଛନ୍ତି) ହେ ସଖି ! ତୁମ୍ଭେ ମୋତେ ଛାଡ଼ିଦିଅ, ମୁଁ ତୁମକୁ ପ୍ରଣାମ କରୁଅଛି, ମୁଁ ସେହି ପ୍ରିୟତମ ନିକଟକୁ ଯାଇ ପାରିବି ନାହିଁ । କିପରି କଥାବାର୍ତ୍ତା କରାଯାଏ, ଏପରି ବଚନ-ଭଙ୍ଗୀ ମୁଁ ଜାଣେନାହିଁ । ଇଙ୍ଗିତକୁ ମଧ୍ୟ ଜାଣେନାହିଁ ଓ ମାନ କାହାକୁ କହନ୍ତି, ଏହା ମଧ୍ୟ ମୁଁ ଜାଣେନାହିଁ ।୧। ସଖୀମାନେ ମିଶି ମୋର ବେଶ-ଭୂଷା କରିଦିଅନ୍ତି, ମୁଁ ତ ନିଜର କେଶ-ବାନ୍ଧିବା ମଧ୍ୟ ଜାଣେନାହିଁ । (ଜାଣିବା କଥା ଦୂରେ ଥାଉ) କାମ-କ୍ରୀଡ଼ାର କଥା ମଧ୍ୟ ମୁଁ ଶୁଣିନାହିଁ, ଏଣୁ ତୁ କହ ? ମୁଁ କିପରି ମାଧବଙ୍କ ସହିତ ମିଳିବି ।୨। ସେ ତ ବଡ଼ ଚତୁର, ରସିକ ଓ ବୁଦ୍ଧିମାନ, ମୁଁ ଅବଳା ଓ ମୋର ଜ୍ଞାନମଧ୍ୟ ଅତି ସ୍ୱଳ୍ପ । କବି ବିଦ୍ୟାପତି କହୁଛନ୍ତି—ମୁଁ ତୁମକୁ ବିଶେଷ କଅଣ କହିବି,ଆଜିର ମିଳନ ଉଚିତ ହେବ ।୩।

( ୧୧ )

ଏ ସଖି ଏ ସଖି ନା ବୋଲହ ଆନ
ତୁଯା ଗୁଣେ ଲୁବଧଲ ସୁନ୍ଦର କାନ ।
ନିତି ନିତି ନୟୂର ଆଓ ବନୁ କାଜ
ବେକତ ହୃଦୟ ଲୁକାଓ୍ସେ ଲାଜ ।୧।
ଅନତହିଁ ଗମନେ ଏତହି ନିହାର
ଲୁବୁଧଲ ନୟନ ଫିରଯ୍ସ କେ ପାର
ବିଦଗଧ ସେହ ତୋହେ ରସ ଭୁଲ
ଏକ ନଳେ ଗାଁଥା ଜନୁ ଦୁଇ ଫୁଲ ।୨।

ଭଣନ୍ତି ବିଦ୍ୟାପତି କବି କଣ୍ଠହାରେ
ଏକସରେ ମନମଥ ଦୁଇ ଜୀବ ମାରେ !

---

ଅର୍ଥ—ହେ ସଖି ! ହେ ସଖି ! ତୁ ବର୍ତ୍ତମାନ ଅନ୍ୟକିଛି କହନା (ସମ୍ମତି ବ୍ୟତିରେକେ ଆଉ କିଛି ଜ୍ଞାପନ କର ନା) ସେହି ସୁନ୍ଦର କାହ୍ନୁ ତୋର ଗୁଣରେ ଲୁବ୍ଧ ହୋଇଛି । ନିତି ନିତି (ପ୍ରତିଦିନ)ବିନାକାର୍ଯ୍ୟରେ ନିକଟକୁ ଆସୁଅଛି ଓ ନିଜର ହୃଦ୍‌ଗତ-ଭାବକୁ ପ୍ରକାଶ କରୁଛି କିନ୍ତୁ ଲଜ୍ଜା ହେତୁ ସ୍ପଷ୍ଟଭାବରେ କିଛି କହୁନାହିଁ ।୧। ସେ ଅନ୍ୟତ୍ର ଗମନ କରିବା ସମୟରେ ଏ ଆଡ଼କୁ ଦୃଷ୍ଟିପାତ କରୁଅଛି । ନୟନର ଲୋଭ ହେଲେ କିଏ ନୟନକୁ ଫେରାଇ ପାରେ ? ସେହି କାହ୍ନୁ ବିଦଗ୍ଧ-ନାୟକ ଓ ତୁ ମଧ୍ୟ ତାପରି ବିଦଗ୍ଧ-ନାୟିକା ଏଣୁ ତୁମେ ଦୁହେଁ ସମାନ ଯେପରିକି ଏକ-ବୃନ୍ତଗତ ପୁଷ୍ପଦ୍ୱୟ ।୨। କବିମାନଙ୍କରକଣ୍ଠହାର ସଦୃଶ ବିଦ୍ୟାପତି କହୁଛନ୍ତି—କନ୍ଦର୍ପ ଏକ-ଶରପାତ ଦ୍ୱାରା ଦୁଇଗୋଟି ଜୀବକୁ ମାରିଥାଏ ।

---

## ପ୍ରଥମ—ମିଳନ

(ଶ୍ରୀକୃଷ୍ଣଙ୍କ ଶ୍ରୀହସ୍ତରେ ଶ୍ରୀରାଧାଙ୍କୁ ସମର୍ପଣ କରିବା ସମୟରେ ଦୂତୀର ଉକ୍ତି— )

( ୧ )

ସୁନ ସୁନ ସୁନ୍ଦର କହ୍ନାଇ
ତୋହେ ସୋଂପଲ ଧନି ରାଇ ।
କମଲିନି କୋମଲ କଲେବର
ତୁହୁସେ ଭୁଖଲ ମଧୁକର ।୧।

ସହଜ   କରବ   ମଧୁପାନ
ଭୂଲହେ   ଜନ   ପଁଚବାନ ।
ଯଉବୋଧୀ ପୟୋଧର ପରସିହ
କୁଂଜର ଜନ ସଫେରୁହ ।୨।
ଗନଇତ   ମୋତିମ   ହାର
ଛଲେ   ପରସବ ଲୁତ ଭାର ।
ନ ବୁଝାଏ ରତି ରସ-ରଙ୍ଗ
ଖନ ଅନୁମତି ଖନ ଭଙ୍ଗ ।୨।
ସିରିସ   କୁସୁମ   ଜନୁ   ତନୁ
ଥୋରି   ସହବ   ଫୁଲ ଧନୁ ।
ବିଦ୍ୟାପତି   କବି   ଗାବ
ଦୂତିକ ମିନତି ତୁଏ ପାବ ।୪।

---

ଅର୍ଥ—ହେ ସୁନ୍ଦର କାହ୍ନୁ ! ଶୁଣ, ମୁଁ ତୁମ୍ଭକୁ ସୁନ୍ଦରୀ ରାଇ (ଶ୍ରୀରାଧା)ଙ୍କୁ ସମର୍ପଣ କରିଦେଇଛି, ତାଙ୍କର ଶରୀର କମଳ ସଦୃଶ କୋମଳ ଓ ତୁମେ କ୍ଷୁଧାର୍ତ୍ତ ମଧୁକର ସଦୃଶ ।୧। ଏଣୁ ତୁମେ ସ୍ୱଭାବିକ ରୀତି ଅନୁସାରେ ମଧୁ-ପାନ କରିବ, କାମର ବଶୀଭୂତ ହୋଇ ( ମୋର ଶିକ୍ଷାକୁ) ଭୁଲି ଯିବନି । ବୁଝେଇ ଓ ଆଶ୍ୱାସନା ଦେଇ ତାହାର ସ୍ତନ-ଯୁଗଳକୁ ସ୍ପର୍ଶ କରିବ, ହସ୍ତୀ ଓ କମଳର ବ୍ୟବହାରକୁ ଗ୍ରହଣ କରିବ ନାହିଁ (ଅର୍ଥାତ୍ ତା'ର ସ୍ତନ-ଯୁଗପ୍ରତି ସେପରି କଠୋର ବ୍ୟବହାର କରିବ ଯେପରି ହସ୍ତୀ କମଳମାନ ପ୍ରତି କରେ) ।୨। ଗ୍ରୈବେୟକ ମୁକ୍ତାହାରର ମୁକ୍ତା ଗଣନା ବ୍ୟାଜରେ ତାର ସ୍ତନଯୁଗଳକୁ ସ୍ପର୍ଶ କରିବ । ସେ ବର୍ତ୍ତମାନ ରତି-ରସ ବିଷୟରେ ଅନଭିଜ୍ଞା, କ୍ଷଣରେ ସନ୍ତୁଷ୍ଟ ହୋଇପାରେ ତ, କ୍ଷଣରେ ରୁଷ୍ଟ ମଧ୍ୟ ହୋଇପାରେ ।୩। ତାର ଶରୀର ଶିରୀଷ-କୁସୁମ ସଦୃଶ କୋମଳ, ସେ ଅଳ୍ପ ମାତ୍ରାରେ କାମଦେବଙ୍କ ପୀଡ଼ା ସହ୍ୟ କରିପାରେ, କବି ବିଦ୍ୟାପତି କହୁଛନ୍ତି – ଦୂତୀର ବିନୟ (ପ୍ରାର୍ଥନା) ତୁମ ଚରଣ ସମର୍ପିତ । (ଏହାକୁ ଭୁଲିବ ନାହିଁ) ।୪।

( ୨ )

ଏକେ ଧନି ପଦୁମିନୀ ସହଜହି ଛୋଟି
କରେ ଧରଇତେ କତ କରୁନା କୋଟି ।
ହଠ ପରିରମ୍ଭଣେ 'ନାହିଁ ନାହିଁ' ବୋଲି
ହରି ଡରେ ହରିନି ହରି ହିଏ ଡୋଲି ।୧।
ବାଲି—ବିଲସିନି, ଆକୁଲ କାନ
ମଦନ କୌତୁକୀ କଏଲ ହଠ ନାହିଁ ମାନ ।
ନୟନେ ଅଞ୍ଚଲ ଚଞ୍ଚଲ ଭାନ
ଜାଗଲ ମନମଥ ମୁଦିତ ନୟାନ ।୨।
ବିଦ୍ୟାପତି କହ ଐସନ ରଙ୍ଗ
ରାଧାମାଧବ ପହିଲହି ସଙ୍ଗ ।

---

ଅର୍ଥ— ପ୍ରଥମତଃ ରାଈ(ଶ୍ରୀରାଧା)ପଦ୍ମିନୀସଦୃଶୀ କୋମଳା ଓ ସ୍ୱଭାବତଃ ଅଳ୍ପବୟସ୍କା,ଏଣୁ ବଳାତ୍କାର ପୂର୍ବକ ଆଲିଙ୍ଗନରେ 'ନାହିଁ ନାହିଁ' ଏପରି ନିଷେଧ ସୂଚକ ବାକ୍ୟ କହୁଅଛି, ସିଂହ ଭୟରେ ହରିଣୀ ପରି ସେହି ତରୁଣୀ ହରି (ଶ୍ରୀକୃଷ୍ଣ)ଙ୍କ ହୃଦୟରେ ଶୁଶୋଭିତ ହେଲି ।୧। ସେହି ବିଳସିନୀ (ଶ୍ରୀରାଧା) ହେଉଛନ୍ତି ବାଳା (ଅଳ୍ପ-ବୟସ୍କା) ଓ କାହ୍ନ ହେଉଛନ୍ତି ବିହ୍ୱଳିତ,କୌତୁକୀ ମଦନ ମଧ୍ୟ ହଠ ପ୍ରକାଶ କରୁଛି ଓ ମାନକୁ ମାନୁ ନାହିଁ । ନୟନର ପ୍ରାନ୍ତଭାଗ ଚଞ୍ଚଳହୋଇ ଚ୍ରଞ୍ଚିତ ହେଲା, ସୁପ୍ତ କନ୍ଦର୍ପ ମଧ୍ୟ ନେତ୍ରକୁ ମୁଦ୍ରିତ କରି ଜାଗ୍ରତ ହୋଇ ଉଠିଲା ।୨। କବି ବିଦ୍ୟାପତି କହୁଛନ୍ତି—ଶ୍ରୀରାଧାମାଧବଙ୍କ ପ୍ରଥମମିଳନ ଅବସ୍ଥାରେ ଏହିପରି ରଙ୍ଗ ପ୍ରକାଶ ପାଇଥିଲା ।

( ୩ )

ପ୍ରଥମହି ଗେଲି ଧନି ପ୍ରୀତମ ପାସ
ହୃଦୟ ଅଧିକ ଭେଲ ଲାଜ ତରାସ ।
ଠାଢ଼ି ଭେଲହି ଧନି ଅଙ୍ଗ ନ ଡୋଲେ
ହେମ-ମୂରତି ସନି ମୁଖହୁ ନ ବୋଲେ ।୧।

କର ଦୁହୁ ଧଏ ପହୁ ପାସ ବଇସାଏ
ହସଲ ଛଲି ଧନି ବଦନ ସୁଖାଏ ।
ମୁଖ ହେରି ଚାକଏ ଭ୍ରମର ଝାପି ଲେଲ
ଅଂକମ ଭରି କଁ କମଲମୁଖି ଲେଲ ।୨।
ଭନହ ବିଦ୍ୟାପତି ଦହଇ ସୁମତି ମତି
ରସ ବୁଝ ସିବସିଂହ ନୃପତି ।

ଅର୍ଥ—ବାଳା! ପ୍ରଥମେହିଁ ପ୍ରିୟତମଙ୍କ ପାଖକୁ ଗଲା, ତେଣୁ ହୃଦୟରେ ଲଜ୍ଜା ଓ ଭୟର ସଂଞ୍ଚାର ଅଧିକ ହେଲା, ସୁନ୍ଦରୀ ସେଠାକୁ ଯାଇ ଠିଆ ହୋଇ ରହିଲା, ତାର ଅଙ୍ଗ-ପ୍ରତ୍ୟଙ୍ଗ ମଧ୍ୟ ସ୍ଥିର ହୋଇ ରହିଥିଲା, ସେ କନକ-ପ୍ରତିମା ଭଳି ସ୍ଥିର ହୋଇ ରହିଲା ଓ ମୁଖରୁ ମଧ୍ୟ ବାକ୍ୟ ନିର୍ଗତ ହେଲାନାହିଁ ।୧। ପ୍ରଭୁ (ପ୍ରିୟତମ) ବେନିହସ୍ତ ଧାରଣ ପୂର୍ବକ ପାର୍ଶ୍ୱରେ ବସାଇନେଲେ, ବାଳା ମୁଖମଳିନ କରି ଶେଷର ଛଳନା କଲା । (ପ୍ରିୟତମ) ଏକଲୟରେ ମୋ ମୁଖାବଲୋକନ କରୁଛନ୍ତି ଏହାଭାବି ନିଜ ମୁଖକୁ କାନିରେ ଲୁଚେଇ ନେଲା । ସେତିକିବେଳେ ପ୍ରିୟତମ ସେହି କମଳ-ମୁଖୀକୁ ନିଜ କୋଡ଼କୁ ନେଇନେଲେ ।୨। କବି ବିଦ୍ୟାପତି କହୁଛନ୍ତି—ହେ ସୁମତି ! ଏବେତ ପ୍ରିୟତମକୁ ଅନୁମତି ପ୍ରଦାନ କର । ଏହି ରସକୁ ନୃପତି ଶିବସିଂହ ବୁଝୁଛନ୍ତି ।

( ୪ )

ସଖି ପରବୋଧି ସୟନତଲ ଆନି
ପିୟ ହିୟ ହରଖି ଧଏଲ ନିଜ ପାନି ।
ଛୁବଇତ ବାଳା ମଲିନ ଭଇ ଗେଲି
ବିଧୁକର ମଲିନ କମଲିନୀ ଭେଲି ।୧।
ନହି ନହି କହଇ ନୟନ ଝର ନୋର
ସୁତି ରହଲି ଗହି ସୟନକ ଓର ।
ଆଲିଙ୍ଗଏ ନିବିବଂଧ ବିନୁ ଖୋରି
କର କୁଚ ପରସ ସେହି ଭେଲ ଥୋରି ।୨।

ଆଁଚର ଲେଇ ବଦନ ପର ଝାଁପ
ଥିର ନହି ହୋଇଅ ଥର ଥର କାଁପ ।
ଭନଇ ବିଦ୍ୟାପତି ଧୀରଜ ସାର
ଦିନ ଦିନ ମନକ ହୋୟ ଅଧିକାର ।୩।

---

ଅର୍ଥ—ସଖୀ, ଆଶ୍ୱାସନା ଦେଇ ନାୟିକାକୁ ଶୟନ-ଗୃହ ପର୍ଯ୍ୟନ୍ତ ନେଇ ଆସିଲା । ସମୁଲ୍ଲସିତ ହୃଦୟ ପ୍ରିୟତମ ସ୍ୱହସ୍ତରେ ତାକୁ(ନାୟିକାକୁ) ଧରିଲେ, କିନ୍ତୁ; ଛୁଇଁଲା ମାତ୍ରକେ ବାଳା ଏପରି ମଳିନ ପଡ଼ିଗଲା, ଯେପରି ଚନ୍ଦ୍ରମା କରଣରେ କମଳିନୀ ହୋଇଯାଏ ।୧। ସେ 'ନାହିଁ,ନାହିଁ' କରୁଥିଲା, ନୟନରୁ ଅଶ୍ରୁ ଝରୁଥିଲା, (ଭୟତ୍ରସ୍ତା ଶ୍ରୀରାଧା) ଶଯ୍ୟାର ଏକ ପାର୍ଶ୍ୱରେ ସୋଇଗଲେ, ପ୍ରିୟତମ ନୀବୀବନ୍ଧକୁ ନ ଖୋଲି ଆଲିଙ୍ଗନ କରିବାକୁ ଲାଗିଲେ, ତାଙ୍କର କର, ରାଧାଙ୍କ ସ୍ତନ-ସ୍ପର୍ଶରେ ଅଳ୍ପ ସଫଳ ହେଲା ।୨। ସେ କାମକୁ ନେଇ ମୁଖ ଅଚ୍ଛାଦିତ କରି ନେଉଛି, ଥର ଥର ହୋଇ କମ୍ପୁଛନ୍ତି,ସ୍ଥିର ହୋଇ ରହିପାରୁ ନାହାଁନ୍ତି । କବି ବିଦ୍ୟାପତି କହୁଛନ୍ତି— ଧୈର୍ଯ୍ୟ ଧାରଣ କରିବା ହେଉଛି ସାର, ଦିନକୁ ଦିନ ବାଳା ଉପରେ କାମଦେବର ଅଧିକାର ହେଉଥିବ ।୩।

( ୫ )

ବାଲ ରମନ— ରମନେ ନାହ ସୁଖ
ଅନ୍ତରେ ମଦନ ଦିଗୁନ ଦେଇ ଦୁଖ ।
ସବ ସଖି ମେଲି ସୁତାଓଲି ପାସ
ଚମକି ଚମକି ଧନି ଛୁଡ଼ଏ ନିସାସ ।୧।

କରଇତେ କୋଲେ ମୋଡ଼ଇ ସବ ଅଙ୍ଗ
ମନ୍ତ୍ର ନା ସୁନଏ ଜନୁ ବାଲ-ଭୁଜଙ୍ଗ ।
ବେରି ଏକ କର ଧନି ମୂଦିତ ନୟାନ
ରୋଗୀ କରଇ ଜନୁ ଔଷଧ ପାନ ।୧।

ତିଲ ଆଧ ଦୁଖ ଜନମ ଭରି ସୁଖ
ଇଥେ କାହେ ଧନି ଭୁହ୍ଣ ମୋଡ଼ସି ମୁଖ ।

ଭଣୟେ ବିଦ୍ୟାପତି ସୁନହ ମୁରାରି
ତୁହୁ ରସ ସାଗର ମୁଗଧିନି ନାରୀ ।୩।

---

ଅର୍ଥ—ବାଳା (ଅଳ୍ପବୟସ୍କା) ରମଣୀର ଉପଭୋଗରେ ସୁଖର ଉପଲବ୍ଧି ହୁଏନାହିଁ, ଅନ୍ତଃକରଣରେ କାମଭାବ ଦ୍ୱିଗୁଣ ହୋଇ ଅଧିକ ଦୁଃଖ ଦିଏ । ସମସ୍ତ ସଖୀଗଣ ଏକତ୍ରିତ ହୋଇ ପାର୍ଶ୍ୱରେ ଶୟନ କରାଇଲେ, ତଥାପି ବାଳା ଚମକି ଚମକି ଖର ନିଶ୍ୱାସ ତ୍ୟାଗ କରୁଛି ।୧। ଆଲିଙ୍ଗନ ସମୟରେ ନିଜର ସର୍ବାଙ୍ଗକୁ ମୋଡ଼ିବାକୁ ଲାଗିଲା, ଯେପରିକି ଭୁଜଙ୍ଗ-ଶିଶୁ ମନ୍ତ୍ରକୁ ମାନେ ନାହିଁ (ସେହିପରି ଏହି ବାଳା ମଧ୍ୟ ଆଲିଙ୍ଗନାଦିକୁ ସ୍ୱୀକାର କରୁନାହିଁ) ଆହେ ସୁନ୍ଦରି ! ଥରେ ମାତ୍ର ନୟନ-ଯୁଗଳକୁ ମୁଦ୍ରିତ କରିଦେ, ଯେପରି ରୋଗୀ ଔଷଧପାନ କଲାବେଳେ କରିଥାଏ ।୨। ଅଳ୍ପ ସମୟ ପର୍ଯ୍ୟନ୍ତ ଦୁଃଖ, କିନ୍ତୁ ଜନ୍ମଯାକ (ସମଗ୍ର ଜୀବନ) ସୁଖ ଉପଭୋଗ ହେବ । ହେ ସୁନ୍ଦରି ! ଏହି ସାମାନ୍ୟ ବିଷୟରେ ତୁ ମୁଖକୁ କାହିଁକି ମୋଡ଼ୁଛୁ । ବିଦ୍ୟାପତି କହୁଛନ୍ତି—ଶୁଣ, ତୁମେ ହେଉଛ ରସସାଗର (କିନ୍ତୁ) ରମଣୀ ହେଉଛି ମୁଗ୍ଧା (ଅଜ୍ଞାନୀ) ।୩।

( ୭ )

କହ ସଖି ସାଙ୍ଗରି ଝାମରି ଦେହା
କୋନ ପୁରୁଷ ସନେ ନବ ନୂଲ ଲେହା ।
ଅଧର ସୁରଙ୍ଗ ଛଲୁ ନୀରସ ପଙ୍ଗାର
କୋନ ଲୁଟଲ ତୁଯ୍‌ ଅମିୟାଁ ଭଣ୍ଡାର ।୧।
ରଙ୍ଗ ପୟୋଧର ଅଛଲେ ଗୋର
ମାଜ ଧରଲ ଜନୁ କନକ କଟୋର ।
ନା ଯାଇୟ ସୋ ପିଯ୍‌ ତହିଁ ଏକ ଗୁଣେ
ଫେରି ଆଓଲ ତୁହୁ ପୂଲବକ ପୁଣେ ।୨
କବି ବିଦ୍ୟାପତି ଇହ ରସ ଜାନେ
ରାଜା ସିବସିଂହ ଲଛିମା ପରମାନେ ।

---

ଅର୍ଥ—ଆଲୋ, କଂପିଂଚିତଶରୀର ସଜନି ! ମନେ ପକାଇ କହ ତ, କେଉଁ ନବ ନାଗର ସହିତ ତୁ ସ୍ନେହ (ପ୍ରୀତି) କଲୁ ? ଅଧରର ରକ୍ତିମା ଓ ଶରୀରର ଲାବଣ୍ୟ ନୀରସ (ରସଶୂନ୍ୟ) ପ୍ରତୀତ ହେଉଛି, ଯେପରି ରସକୁଲ୍ୟା (ପୟଃ ପ୍ରଣାଳୀ) ରସ (ଜଳ) ଶୂନ୍ୟ ହେଲେ, ନୀରସ ପ୍ରତୀୟମାନ ହୁଏ, କିଏ ସେ ଚୋର ଏହି ଅପୂର୍ବ ଲାବଣ୍ୟାମୃତକୁ ଅପହରଣ କରିଛି ? ।୧। ଅହୋ, ସୁପରିଷ୍କୃତ ସ୍ୱର୍ଣ୍ଣ-ନିର୍ମିତ ଗିନା ସଦୃଶ ଏହି ରମଣୀୟ ସ୍ତନ-ଯୁଗଳ ଅତିଶୟ ଲୋହିତ ହୋଇ ଯାଇଛି । ଥରେ ଗ୍ଳାନି ପାଇ ଯାଇଛୁ ବୋଲି ଆଉ ସେହି ପ୍ରିୟତମ (ନାଗର)ଙ୍କ ସମୀପକୁ ପୁନର୍ବାର ଯିବୁ ନାହିଁ, ତୁ ପୂର୍ବଜନ୍ମକୃତ ସୁକୃତର ଆଧିକ୍ୟରୁ ଲେଉଟି ଆସିଛୁ ।୨। କବି ବିଦ୍ୟାପତି ଏହି ରସକୁ ଉତ୍ତମଭାବେ ଜାଣନ୍ତି । ଏ ବିଷୟରେ ଲଛିମା ଦେବୀଙ୍କ ପ୍ରିୟତମ ରାଜା ଶିବସିଂହ ହେଉଛନ୍ତି ପ୍ରମାଣ ସ୍ୱରୂପ ।

( ୭ )

କି କହବ ଯେ ସଖି ରଜନି କ ବାତ
ବହୁ ଦୁଃଖେ ଗୋଁୟାୟଲୁ ମାଧବ ସାଥ ।
କରେ କୁଚ ଝାଁପୟେ ଅଧରେ ମଧୁପାନ
ବଦନେ ବଦନ ଧରି ବଧୟେ ପରାନ ।୧।

ନବଯୌବନ ତାହେ ରସ ଚତୁର
ରତିରସ ନା ଜାନୟେ କାନୁ ସେ ଗୋଁୱାର ।
ମଦନେ ବିଭୋର କହୁଇ ନା ଜାନ
କତୟେ ମିନତି କରି ତବୁ ନାହି ମାନ ।୨।

ଭଣୟେ ବିଦ୍ୟାପତି ସୁନ ବରନାରି
ତୁହୁ ମୁଗଧିନୀ ସୋଇ ଲୁବଧ ମୁରାରି ।

---

ବାତ = କଥା, ଗୋଁୟାୟଲୁ = ଯାପନ କଲି, ଝାଁପୟେ = ଆକ୍ରମଣ କରେ ବା ଆବୃତ କରେ, ତାହେ = ତହିଁରେ, ଗୋଁୱାର = ଅଜ୍ଞାନ, ଅବୋଧ, ତବୁ ନାହି ମାନ = ତଥାପି ମାନେନାହିଁ; ଅର୍ଥାତ୍ ଶୁଣେନାହିଁ, ମୁଗଧିନୀ = ଅଜ୍ଞା, ବିମୁଗ୍ଧା ।

(ଏହିସବୁ କଠିନ ଶବ୍ଦର ଅର୍ଥ ଦିଆ ଯିବାରୁ, ଏହି ପଦାବଳୀ ନିମିତ୍ତ ସ୍ୱତନ୍ତ୍ର ଅର୍ଥର ଅବଶ୍ୟକତା ନାହିଁ । କାରଣ ଅନ୍ୟାନ୍ୟ ଶବ୍ଦ ଗୁଡ଼ିକ ଓଡ଼ିଆ ସହ ସମାନ)

( ୮ )

କି କହବ ସଖି କହଇତେ ଲାଜ
ଯୋଇ କରଲ ସୋଇ ନାଗର ରାଜ ।
ପହିଲ ବୟସ ମଝୁ ନାହିଁ ରତିରଙ୍ଗ
ହୋତ ମିଲାୟଲ କାନୁକ ସଙ୍ଗ ।୧।

ହେରଇତେ ଦେହ ମଝୁ ଥରହରି କାଁପ
ସୋଇ ଲୁବ୍ଧ—ମତି ତାହେ କରୁ ଝାଁପ ।
ଚେତନ ହରଲ ଆଲିଙ୍ଗନ ବେଲି
କି କହବ କଇସୁ କରଲ ରସକେଲି ।୨

ହଠକରି ନାହ କରଲ ଯତ କାଜ
ସୋ କି କହବ ଇହ ସଙ୍ଗିନି ସମାଜ ।
ଜାନସି ତବ କାହେ କହସି ପୁଛାରି
ସେ ଧନ ଯୋ ଥିର ତାହେ ନିହାରି ।୩।

ବିଦ୍ୟାପତି କହ ନା କର ତରାସ
ଯୌବନ ହୋୟତ ପହିଲ ବିଲାସ ।

---

ଅର୍ଥ—ଆଲୋ ସଖି ! କଅଣ କହିବ ? ସେହି ନାଗରବର, ଯାହା କଲେ, ତାହା କହିବାକୁ ଲଜ୍ଜା ହେଉଛି, ବୟସରେ ମୁଁ ନବୀନା ଏଣୁ ରତି-କ୍ରୀଡ଼ାର ଜ୍ଞାନ (ଅନୁଭବ) ମଧ୍ୟ ନାହିଁ, ତଥାପି ଦୂତୀ ନେଇ ସେଇ (ନାଗର-ଶ୍ରେଷ୍ଠ) କାହ୍ନୁ ସଙ୍ଗରେ ମିଳନ କରାଇଲା । ୧ । ତାଙ୍କୁ ଦେଖି ଦେଲା ମାତ୍ରକେ ମୋର ସର୍ବାଙ୍ଗରେ (ସାତ୍ତ୍ୱିକ-ଭାବଜନିତ) କମ୍ପ ଜାତ ହେଲା, ତଥାପି ସେହି ଲୁବ୍ଧ-ମତି ମୋ ଉପରେ ଆକ୍ରମଣ କଲେ, ସେ ଯେତେବେଳେ ଆଲିଙ୍ଗନ କଲେ ସେତେବେଳେ ମୁଁ ନିଜର ଚେତନାକୁ ହରାଇ ବସିଲି ଏଣୁ ସେହି ରସ-କେଳିର ବର୍ଣ୍ଣନା କପରି ତୋ ସମ୍ମୁଖରେ

କହିବ । ୨ । ମୋର ଅନୁନୟକୁ ଅସ୍ୱୀକାର କରି ହଠ ପ୍ରବନ୍ଧ ଯାହା ଯାହା କଲେ, ତାହା ସବୁ ଏହି ସଖି ସମାଜ ମଧ୍ୟରେ କଣ ଆଉ କହିବ ? ତୁ ତ ସବୁକିଛି ଜାଣୁ, ଏଣୁ ଜାଣିଶୁଣି ପୁନଃ କାହିଁକି ପଚାରୁଛୁ, ସେହି ବାଳା, ଧନ୍ୟା ଯେ ତାଙ୍କୁ ଅବଲୋକନ କରି ସ୍ଥିର ହୋଇ ରହିପାରେ । । ୩ । ବିଦ୍ୟାପତି କହୁଛନ୍ତି—ପ୍ରଥମ ସମାଗମରେ ଏହିପରି ହୋଇଥାଏ । ଏଣୁ ଭୟ କରିବା ଉଚିତ ନୁହେଁ ।

( ୯ )

ପୁଛମୋ ଏ ସଖି ପୁଛମୋ ତୋହୁ
କେଳିକଳା ରସ କହବି ମୋହୁ ।
କେସ-ଭୂଷଣ ତୋର ସବ ପୁଛିଲ ପୁରି
ଅଲକା ତିଲକ ମିଟି ଗେଲହ ଦୂରି ।୧।

କୁନ୍ତଲ-କୁସୁମ ସବ ଭେଲ ଭିନ୍ନ ଭିନ୍ନ
ଅଧରହି ଲାଗଲ ଦଶନକ ଚିହ୍ନ ।
କୋନ ଅବୁଝ ହେନ କୁଚେ ନଖ ଦେଲ
ହା ! ହା ! ସମ୍ଭୁ ଭଗନ ଭେ ଗେଲ । ୨।

ଆଲସ ହି ପୂରଲ ସକଲ ହିଗା
ବସନ ଲେଇ ଘନ-ଘନ- କରିବା ।
ଭଣୟେ ବିଦ୍ୟାପତି ସୁନ ବରନାରି
ସବ ରସ ଲୟଲ ରସିକ ମୁରାରି ।୩।

---

ଅର୍ଥ—ହେ ସଖି ! ପଚାରିବ, ତୋତେ ହିଁ ପଚାରିବ, ତୁ ମୋତେ କେଳି-କଳାର ରସ ବିଷୟରେ ସବୁ କହିବୁ । ତୋର କେଶ-ବିନ୍ୟାସ ଓ ଭୂଷଣାବଳୀର ବିନ୍ୟାସ ମଧ୍ୟ ସବୁକିଛି ସୁବିନ୍ୟସ୍ତ ହୋଇ ଯଥାସ୍ଥଳରେ ଥିଲା, ବର୍ତ୍ତମାନ ଅଳକା ଓ କୁଙ୍କୁମ କସ୍ତୁରିକାଦି ରଚିତ ତିଳକ ପତ୍ର-ଭଙ୍ଗାଦି ଅପସୃତ ହୋଇଯାଇଛି । ୧ । କୁନ୍ତଳ ସ୍ଥିତ କୁସୁମ ଦାମ ମଧ୍ୟ ଛିନ୍ନ-ଭିନ୍ନ ହୋଇ ବିଗଳିତ ହୋଇ ପଡ଼ୁଛି ଓ ଅଧରରେ ମଧ୍ୟ ଦଶନ ଚିହ୍ନ ଅଙ୍କିତ ହୋଇଛି । କିଏ ସେ ଏପରି ଅବାଧ ହୋଇ କୁଚ-ଯୁଗ୍ମରେ

ନଖାଘାତ କଲ ? ହା ! ହା ! (ସ୍ତନରୂପକ) ଶମ୍ଭୁ ଆଜି ଖଣ୍ଡିତ ହୋଇ ଗଲେ । ୨ । ସର୍ବାଙ୍ଗ ଆଜି ଆଲସ୍ୟ ପରିପୂର୍ଣ୍ଣ ସଦୃଶ ପ୍ରତିଭାତ ହେଉଛି, ବସ୍ତ୍ରାଞ୍ଚଳକୁ ଧରି ଘନ ଘନ ବ୍ୟଜନ କରୁଅଛୁ । ବିଦ୍ୟାପତି କହୁଛନ୍ତି— ହେ ଲଳନୋତ୍ତମେ ! ପ୍ରଣିଧାନ କର । ମୃଗାକ୍ଷୀ ଚୋର ସବୁରସକୁ ଅପହରଣ କଲେ ।୩।

( ୧୦ )

•ନା କର ନା କର ସଖି ମୋହେ ଅନୁରୋଧ
କ୍ୟା କହବ ହମହୁ ତକର ପରବୋଧ
ଅଲପ ବୟସ ହମ, କାନ୍ହ ସେ ତରୁନା
ଅତହୁ ଲକଡ଼ର ଅତହୁ କରୁନା ।୧।
ଲୋଭେ ନିଠୁର ହରି କଏଲହ୍ନି କେଲି
କ୍ୟା କହବ ଜାମିନି ନତ ଦୁଖ ଦେଲି ।
ହଠ ଭେଲ ରସ ମୋର ହରଲ ଗେଆନ
ନିବି-ବନ୍ଧ ଛୋରଲ କଖନ କେ ଜାନ ।୨।

ଦେଲ ଆଲିଙ୍ଗନ ଭୁଜ-ଜୁଗ ଚୁଁପି
ତଖନ ହୃଦୟ ମଝୁ ଉଠଲ କାଁପି ।
ନୟନ ବାରି ଦରଘାଓଲି ରୋଇ
ତବହୁ କାହ୍ନୁ ଉପସମ ନହି ହୋଇ ।୩।
ଅଧର ସୁରସ ମଝୁ କଏଲହ୍ନି ମନ୍ଦ
ରାହୁ ଗରସି ଜନି ତେଜଲ ଚନ୍ଦ
କୁଚ-ଜୁଗ ଦେଲହ୍ନି ନଖ ପରହାର
କେହରି ଜନୁ ଗଜ କୁମ୍ଭ ବିଦାର ।୪।

ଭନଇ ବିଦ୍ୟାପତି ରସବତି ନାରି
ଭୁହୁ ସେ ଚେଷ୍ଟାନ ଲୁବୁଧ ମୁରାରି ।

---

ଅର୍ଥ—ହେ ସଖି ! (ରାତିର କଥା ଶୁଣାଇବା ବିଷୟରେ) ମୋ । ସତ୍ୱର ଆଗ୍ରହ କରନାହିଁ, ମୁଁ ସେ ସମସ୍ତ ବିଷୟ ବୁଝେଇବା ପାଇଁ କଣ

ଅବା କହିପାରେ । ମୁଁ ସ୍ୱଳ୍ପବୟସ୍କା ଓ କାହ୍ନୁ ଚତୁରେ, ମୁଁ ତ ଲଜ୍ଜାର ଆଧିକ୍ୟହେତୁ ବିଶେଷ ଭୟଭୀତା ଓ ଅଧୀର ହୋଇ ପଡ଼ିଥିଲି ।୧। ଲୋଭରେ ନିଷ୍ଠୁର ହୋଇ ଶ୍ରୀହରି କାମ-କ୍ରୀଡ଼ା କଲେ, ରତିରେ (ସେହି କାମ-କ୍ରୀଡ଼ାରେ) ମୋତେ ଯେତେ ଦୁଃଖ ଦେଲେ, ତାହା କିଏ କହିବ । ହଠ ପୂର୍ବକ (ବଳାତ୍କାରରେ) ରସ (ସମ୍ଭୋଗ) ସମ୍ପନ୍ନ ହେଲା ଓ ସେ ମୋର ଜ୍ଞାନକୁ ହରଣ କରିନେଲେ । ନୀବିବନ୍ଧ (ବସ୍ତ୍ରଗ୍ରନ୍ଥି) କେତେବେଳେ ମୋର ମୋଚନ କଲେ, ତାହା ମୁଁ ଜାଣି ପାରିଲି ନାହିଁ ।୨। ସେ ଯେତେବେଳେ ଭୁଜପାଶକୁ ବନ୍ଧକରି ଗାଢ଼ ଆଲିଙ୍ଗନ କଲେ ସେତେବେଳେ ମୋର ହୃଦୟ କମ୍ପିତ ହୋଇଗଲା । ମୁଁ କାନ୍ଦି କାନ୍ଦି ଅଶ୍ରୁର ପ୍ରଦର୍ଶନ କଲି, ତଥାପି କାହ୍ନୁ ଶାନ୍ତ (ନିବୃତ୍ତ) ହେଲେ ନାହିଁ ।୩। ମୋର ଅଧରର ସମସ୍ତରସ ପାନ କରି, ମଳିନ କରି ଦେଲେ । ରହସରେ ରାହୁ ଚନ୍ଦ୍ରମାକୁ ଗ୍ରାସକରି ଛାଡ଼ିଲାପରି ଛାଡ଼ିଦେଲେ, ସିଂହ ଗଜକୁମ୍ଭ-ବିଦାରଣ କଲାପରି ମୋ ସ୍ତନଯୁଗ୍ମରେ ସେ ନଖାଘାତ କଲେ । । ବିଦ୍ୟାପତି କହୁଛନ୍ତି—ହେ ରସବତୀ ରମଣୀ, ତୁମେ ସୁଚତୁରା, ଏଣୁ ତୁମ ପ୍ରତି ମୁରାରି ଲୁବ୍‌ଧ (ମୋହିତ) ହୋଇଛନ୍ତି ।

( ୧୧ )

ହାମ ଅତିଭୀତା ରହନୁ ତନୁ ଗୋଇ
ସୋ ରସ-ସାଗର ଥିର ନାହି ହୋଇ ।
ରସ ନାହି ହୋୟଲ କୟଲ ଯେ ଶାନ୍ତି
ମଦନ-ଲତା ଜନୁ ଦଂଶଲ ହାନ୍ତି ।୧।

କତ ପୁନ କାକୁତି କୟଲ ଅନୁକୂଲ ।
ତବହୁଁ ପାପ ହୃଦୟେ ମଝୁ ନାହିଁ ଭୂଲ
ହାମାରି ଆଛଲ କତ ପୁରବକ ଭାଗି
ଫିରି ଆଓଲୁ ହାମ ସେ ଫଲ ଲାଗି ।୨।

ବିଦ୍ୟାପତି କହେ ନା କରହ ଖେଦ
ଐସନ ହୋୟଲ, ପହିଲ ସମ୍ଭେଦ ।

---

ଅର୍ଥ—ମୁଁ ଅତିଶୟ ଖିନ୍ନା ହୋଇ ନିଜ ଅଙ୍ଗକୁ ସଂକୁଚିତ କରି ନେଇଲି । (ତଥାପି) ସେହି ରସ-ସାଗର ମୁଁ ଛିଡ଼ାଇ ରହି ପାରିଲେ ନାହିଁ ଯେ ମୋତେ ଯେପରି ଶାସ୍ତି ଦେଲେ, ସେଥିରୁ ପରିତ୍ରାଣ ରହିଲା ନାହିଁ । ଯେପରି କି ହସ୍ତୀ ମଦନ-ଲତା (କଣ୍ଟକ-ବୃକ୍ଷବିଶେଷ)ର ଦଂଶନରେ ଅନୁଭବ କରେ (ଅର୍ଥାତ୍ ଏଥିରେ ହସ୍ତୀ କ୍ଲେଶାନୁଭବ କରେ, ସୁଖାନୁଭବ ତାର ହୁଏନାହିଁ) ।୧। ପୁଣି ମୁଁ ମଧ୍ୟ ଅନୁକୂଳଭାବେ କେତେକ କାକୁତି-ମିନତି କଲି । ତଥାପି ତାଙ୍କର ଦୁଷ୍ଟାନ୍ତଃକରଣ ମୋତେ ଭୁଲି ପାରିଲା ନାହିଁ । ମୋର କେତେ ପୂର୍ବଜନ୍ମର ଭାଗ୍ୟ ଥିଲା, ଯେହେତୁ ମୁଁ ସେଠାରୁ ଫେରି ଆସି ପାରିଲି ।୨। ବିଦ୍ୟାପତି କହନ୍ତି—ଏ ବିଷୟରେ ଦୁଃଖ କର ନାହିଁ, ପ୍ରଥମମିଳନ ଏହିପରିଭାବେ ହୁଏ ।

( ୧୨ )

ସୁବଲେର ସନେ ବସିୟା ସାମ
କହୟେ ରଜନୀ-ବିଳାସ କାମ ।
ସେ ଯେ ସୁବଦନୀ ସୁନ୍ଦରି ରାଇ
ଆବେ ସେ ହିୟାର ମାଝାରେ ଲାଇ ।୧।

ଚୁମ୍ବନ କରଲ କତହୁଁ ଛନ୍ଦ
ରଭସେ ବିହସି ମନ୍ଦ ମନ୍ଦ ।
ବହୁବିଧ କେଳି କୟଲ ସୋଇ
ସେ ସବ ସ୍ୱପନ ହୋୟଲ ମୋଇ ।୨।

କି ବା ସେ ବଚନ ଅମିୟା ମିଠ
ଭାଙ୍ଗର ଭଙ୍ଗିମ କୁଟିଲ ଦିଠ ।
ସୋ ଧନି ହିୟା ମାଝାରେ ଜାଗେ
ବିଦ୍ୟାପତି କହେ ନବୀନା ରାଗେ ।୩।

---

ଶବ୍ଦାର୍ଥ—ଛନ୍ଦ = ପ୍ରକାର, ରଭସେ = ରହସ୍ୟରେ, ଆନନ୍ଦରେ, ସୋଇ = ସେ, ମୋଇ—ମୋଠାରେ, ମୋତେ, ଅମିୟାମିଠ = ଅମୃତତୁଲ୍ୟ, ସୁମିଷ୍ଟ, ଭାଙ୍ଗର ଭଙ୍ଗିମ = ଭ୍ରୂଭଙ୍ଗୀ, ଦିଠ = ଦୃଷ୍ଟି, କୁଟିଲ ଦିଠ = ବକ୍ର

ଦୃଷ୍ଟି । (ଏହି ଶବ୍ଦାର୍ଥର ଅର୍ଥ କଥନାନନ୍ତର ଏହି ପଦାବଳୀ ସୁଖବୋଧ ହେବାରୁ ଏହାର ଅର୍ଥ ଦିଆଗଲା ନାହିଁ)

( ୧୩ )

ନବ କୁଚ ନଖ ଦେଖି ଜୀଉ ମୋର କାଁପେ
ଜନୁ ନବ-କମଲେ ଭ୍ରମରୀ କରୁ ଝାଁପେ ।
ଟୂଟଲ ଗୀମକ ମୋତିମ ହାର
ରୁଧିରେ ଭରଲ କଏ ସୁରଙ୍ଗ ପଟାର ।୧।
ସୁନ୍ଦର ପୟୋଧର ନଖ କ୍ଷତ ଧାରି
କେସରି ଜନୁ ଗଜକୁମ୍ଭ ବିଦାରି
ଗୁନ ନା ଯାଇଓ ଧନି ସୋ ପିୟା ଠାମ
ଜୀବନ ରହଲେ ପୂରାଇବ କାମ ।୨।
ଭଣୟେ ବିଦ୍ୟାପତି ସୁନ୍ଦରି ଆଜ
ଅନଲେ ପୁଡ଼ଲ ପୁନ ଅନଲେ କାଜ ।

---

ଶବ୍ଦାର୍ଥ—ଜୀଉ = ଜୀବନ, ଜନୁ ନବ···ଝାଁପେ = ଯେପରିକି ନବ ପଦ୍ମ ପତ୍ରରେ ଝମ୍ପଦାନ ପୂର୍ବକ ଭ୍ରମର ଉପବିଷ୍ଟ, ଗୀମକ = ଗଳାର, ମୋତିମହାର = ମୁକ୍ତାହାର, ଟୁଟଲ = ଛିଣ୍ଡିଲା, ରୁଧିରେ···ପଟାର = କେଉଁ ସୁନ୍ଦର ପ୍ରଣାଳୀ ରୁଧିର ପୂର୍ଣ୍ଣହେଲା, ପଟାର = ପଯୂଃ ପ୍ରଣାଳୀ, ଧନି = ସୁନ୍ଦରୀ, ଠାମ = ସ୍ଥାନ, ପୂରାଇବ = ପୂର୍ଣ୍ଣକରିବୁ, ଅନଲେ ପୁଡ଼ଲେ ···ଅନଲେ କାଜ = ଅଗ୍ନିରେ ଦଗ୍ଧ ହେଲେ ପୁନଃ ସେକ ଦେବାପାଇଁ ଅଗ୍ନିର ପ୍ରୟୋଜନ ହୁଏ ।

( ୧୪ )

ଆହେ ସଖି ଆହେ ସଖି ଲଏ ଜନି ଜାହ
ହମ ଅତି ବାଳିକା ଆକୁଲ ନାହ ।
ଗୋଟ ଗୋଟ ସଖି ସବ ଗେଲି ବହରାୟ
ବଜର କବାଡ଼ ପହୁ ଦେଲହି ଲଗାୟ ।୧।
ତେହି ଅବସର ପହୁ ଜାଗଲ କାନ୍ତ

ତୀର ସଂଭରିତ ନିଜ ଦେଲ ଅନ୍ତ ।
ନବ୍ୱ ନବ୍ୱ କରଏ ନୟନ ତ଼ର ପେର
କାଁନ୍ଧ କମଲ ଭମର ଝିକଝୋର ।୨।

ଜଇସେ ଡଗମଗ ନଲିନିକ ନୀର
ତଇସେ ଡ଼ଗମଗ ଧନିକ ସରୀର ।
ଭନ ବିଦ୍ୟାପତି ସ୍ମୁନୁ-କବିରାଜ
ଆଗି ଜାରି ପୁନ ଆଗିକ କାଜ ।୩।

---

ଅର୍ଥ—(ଶ୍ରୀରାଧା ସଖୀମାନଙ୍କୁ କହୁଛନ୍ତି) ହେ ସଖି, ହେ ସଖି ! ମୋତେ ଆଜ 'ସେଠାକୁ ନେବନାହିଁ । ମୁଁ ନିତାନ୍ତ ବାଳିକା ଓ ମୋର ନାଥ ହେଉଛନ୍ତି (କାମାବେଶରେ) ଅକୁଳ, (ତଥାପି ତାଙ୍କୁ ସେଠାକୁ ନିବାକୁ ପଡ଼ିଲା) ଗୋଟି ଗୋଟି ହୋଇ ସମସ୍ତ ସଖୀଗଣ ବାହାରକୁ ଚାଲି ଗଲେ ଓ ପ୍ରିୟତମ, ଘରର କବାଟ ବନ୍ଦ କରିଦେଲେ ।୧। ସେ ସମୟରେ କାନ୍ତଙ୍କ କାମ ଜାଗ୍ରତ ହେଲା, (ସେ ବସ୍ତ୍ର ଅପସାରଣର ଉପକ୍ରମ କଲାରୁ) ବାଳା ବସ୍ତ୍ର ସଜାଡ଼ୁ ସଜାଡ଼ୁ, ତାର ପ୍ରାଣ ଉତ୍କଣ୍ଠିତ ହୋଇଗଲା, ସେତେ-ବେଳେ ସେ ନାହିଁ ନାହିଁ କରୁଥିଲା ଓ ଆଖିରୁ ଲୁହ ବୁହାଉ ଥିଲା, ତଥାପି ଭ୍ରମର ଅବିକସିତ କମଳକୁ କମ୍ପିତ କଲାପରି ସେ ତାକୁ କମ୍ପିତ କରି ଦେଲେ ।୨। କମଳପତ୍ର ଉପରେ ଜଳବିନ୍ଦୁ ହେଲାପରି ସେତେବେଳେ ତାର ଶରୀର ମଧ୍ୟ କମ୍ପିତ ହେଉଥିଲା । କବି ବିଦ୍ୟାପତି କହୁଛନ୍ତି— ଅଗ୍ନି ଯଦ୍ୟପି ଦାହ କରେ, ତଥାପି ତାର ଆବଶ୍ୟକତା ଥାଏ ।୩।

( ୧୪ )

ଥରହରି କାଁପଲ ଲହୁ ଲହୁ ଭାଷ
ଲଜେ ନା ବଚନ କରଯ୍ୱେ ପରକାସ ।

ଆଜ ଧନୀ ପେଖଲୁ ବଡ଼ ବିପରୀତ
ଛଣେ ଅନୁମତି, ଛଣେ ମାନଇ ଭୀତ ।୧।

ସୁରତକ ନାମ ମୁଦଇ ଦୁଇ ଆଖି
ପଓ୍ୱଲ ମଦନ ମହୋଦଧି ସାଖି ।

ଚୁମ୍ବନ ବେଳ କରଯେ ମୁଖ ବଙ୍କା
ମିଲଲହୁ ଚାଁଦ ସରୋରୁହ ଅଙ୍କା ।୨।
ନୀବିବନ୍ଧ ପରଶେ ଚମକ ଉଠେ ଗୋରି
ଜନଲ ମଦନ ଭଣ୍ଡାରକ ଚୋରି ।
ଫୁସୁଲ ବସନ ହିୟା ଭୁଜେ ବନ୍ଧ ସାଠି ,
ବାହୁରେ ରଚନ ଆଁଚରେ ଦେଇ ଗାଁଠି ।୩।
ବିଦ୍ୟାପତି କ ବୁଝବ ବଲ ହରି
ତେଜ ତଲପ ପରିରମ୍ଭଣ ବୋରି ।

---

ଅର୍ଥ—ଥରହର ହୋଇ କମ୍ପୁଥିଲା ଓ କ୍ଷୀଣ କଣ୍ଠରେ ଅସ୍ଫୁଟ ବଚନ କହୁଥିଲା, କିନ୍ତୁ ଲଜ୍ଜାହେତୁ ବଚନ ଭଲଭାବରେ ପରିସ୍ଫୁଟ ହେଉ ନଥିଲା, ଆଜ ମୁନ୍ଦରୀକୁ ବଡ଼ ବିପରୀତଭାବେ ଦେଖିଲି, କ୍ଷଣକରେ ସମ୍ମତା ଓ ଅପର କ୍ଷଣରେ ଆଶଙ୍କିତା ହେଉଥିଲା ।୧। 'ରତିରଙ୍ଗ'ର ନାମ ଶୁଣିଲା କ୍ଷଣି ବେନି ଚକ୍ଷୁକୁ ମୁଦ୍ରିତ କରୁଥିଲା, କାମ-ସାଗରର ଦର୍ଶନ ଲଭିଲା । ଚୁମ୍ବନ ସମୟରେ ନିଜ ମୁହଁକୁ ବଙ୍କା କରି ଦେଉଥିଲା, ଯେପରି କି ଚନ୍ଦ୍ରଙ୍କ ସମ୍ପର୍କରେ ସରୋରୁହ, (ଅର୍ଥାତ୍ ପଦ୍ମ ଯେପରି ଚନ୍ଦ୍ରସମାଗମରେ ସଙ୍କୁଚିତ ହୁଏ ସେହିପରି ରମଣୀ ମଧ୍ୟ ନାଗର-ସମାଗମରେ ସଙ୍କୁଚିତା ହେଲା) ।୨। ନୀବିବନ୍ଧକୁ ସ୍ପର୍ଶକଲା ମାତ୍ରେକେ ଗୋରୀ ଚମକି ଉଠିଲା ଓ ମଦନଭଣ୍ଡାରର ଅପହରଣ ବିଷୟ ଜାଣିପାରିଲା, ବସନ ଉନ୍ମୋଚିତ ହେଲେ ମଧ୍ୟ ଭୁଜଦ୍ୱାରା ଦୃଢଭାବରେ ବକ୍ଷସ୍ଥଳକୁ ସମାବୃତ କରୁଥିଲା । ରନ୍ଧ୍ର ବନ୍ଧଦେଶରେ ଥିଲେହେଁ ଅଞ୍ଚଳରେ ଗ୍ରନ୍ଥି ଦାନ କରାଇଥିଲା ।୩। ବିଦ୍ୟାପତି କହୁଛନ୍ତି- ହରି ବୋଲ ! ଶଯ୍ୟା ତ୍ୟାଗ ପୂର୍ବକ ଆଲିଙ୍ଗନ ତତ୍ପରହେବା ସମୟର କଥା ବୁଝିବ ବା କିଏ ?

( ୧୬ )

ନବ-ବନ୍ଧନ ହରି କଏ କଇ ଦୂର
ଏହୋ ପଏ ତୋହର ମନୋରଥ ପୂର ।
ହେରଇନେ କଓନ ସୁଖ ବୁଝଏ ନ ବଚ୍ଛର

ବଡ଼ ତୁହୁ ଢୀଠ ବୁଝଲ ବନମାଲି ।୧
ହମର ସପଥ ଜୌଁ ହେରହ ମୁରାରି
ଲହୁ-ଲହୁ ତବ ହମ ପାରବ ଗାରି ।
ବିହର ସେ ରହସି ହେରନେ କୌନ କାମ
ସେ ନହିଁ ସହବନ୍ତି ହମର ପରାନ ।୨।
କହୁଁ ନହିଁ ସୁନିଏ ଏହନ ପରକାର
କରଏ ବିଲାସ ଦୀପ ଲିଏ ଜାର ।
ପରିଜନ ସୁନି-ସୁନି ତେଜବ ନିସାସ
ଲହୁ-ଲହୁ ରମହ ସଖୀଜନ ପାସ ।୩।
ଭନଇ ବିଦ୍ୟାପତି ଏହୋ ରସ ଜାନ
ନୃପ ସିବସିଂହ ଲଖିମା ଵରମାନ ।

---

ଅର୍ଥ—ହେ ହରି ! ମୋ ନୀବି-ବନ୍ଧନକୁ ଅପସାରିତ କରୁଛ କାହିଁକି ? ହଉ, ତୁମର ମନୋରଥ ଏତିକରେ କି ପୂର୍ଣ୍ଣ ହୋଇଯାଉ ? ଖୋଲିସାରି, ପୁଣି ଏହାକୁ ଦେଖିବାରେ କେଉଁ ସୁଖ ଅନୁଭବ କରୁଛ, ତାହା ମୁଁ ବୁଝିପାରୁ ନାହିଁ, ହେ ବନମାଳୀ ! ତୁମେ ବଡ଼ ଧୃଷ୍ଟ, ଏହା ମୁଁ ବୁଝିଲି, ।୧। ହେ ମୁରାରି ! ତୁମକୁ ମୋର ଶପଥ, ଯଦି ଏହାକୁ ଦେଖ, ଏପରି ହେଲେ ଧୀରେ ଧୀରେ ମୁଁ ଗାଳି ଦେବି । ଆନନ୍ଦରେ ବିହାର କର, ଦେଖିବାରେ ଲାଭ କଣ ? ଏହି ବ୍ୟବହାରକୁ ମୋ ପ୍ରାଣ ସହନ କରିବ ନାହିଁ ।୨। ମୁଁ ଏପରି ବ୍ୟବହାର କେଉଁଠାରେ ଶୁଣିନାହିଁ, ଯେ ଦୀପ ଜାଳି ନେଇ ବିଳାସ କରାଯାଏ ? ପଡ଼ିଶାଲୋକେ ଏହି ବ୍ୟବହାରକୁ ଶୁଣିଲେ ନିଶ୍ୱାସ ଛାଡ଼ିବେ ଓ ନିନ୍ଦା କରିବେ, ଏଣୁ ତୁମେ ଧୀରେ ଧୀରେ ରମଣ କର । ସଖୀଗଣ ମଧ୍ୟ ନିକଟରେ ଅଛନ୍ତି ।୩। ବିଦ୍ୟାପତି କହୁଛନ୍ତି, ଏହି ରସକୁ ରାଣୀ ଲେଖିମାଦେବୀଙ୍କ ପତି ରାଜା ଶିବସିଂହ ଜାଣନ୍ତି ।

( ୧୭ )

ରତି-ସୁଖସାରଦ ତୁହୁ ରାଖ ମାନ
ବାଢ଼ିଲେ ଜୌବନ ତୋହେ ଦେବ ଦାନ ।

ଆବେ ସେ ଅଲପ ରସ ପୂରବ ଆଶ
ଥୋରି ସଲିଲ ତୁଅ ନ ଜାବ ପିୟାସ ।୧।
ଅଲପ ଅଲପ ରତି ସୂହ୍ମ ଗୃହ୍ନ ମାନ
ପ୍ରତିପଦ ଚାଁଦ କଲା ସମ ବାଢ଼ି ।
ଥୋରି ପୟୋଧର ନ ପୂରବ ପାନି
ନ ଦେହ ନଖ, ରଖ ହରି ରସଜାନି ।୨।
ଭନଇ ବିଦ୍ୟାପତି କଇସନ ବାତି
କାଁଚ ଡାଡ଼ିମ ପ୍ରତି ଐସନ ପ୍ରୀତି ।

---

ଅର୍ଥ—ତୁମେ କାମ-କ୍ରୀଡ଼ାରେ ପରମ ଚତୁର, ଏଣୁ ମର୍ଯ୍ୟାଦା ରକ୍ଷା କର । ଯୌବନ ମଣଟକୁ ହେଲେ, ତମକୁହିଁ ମୁଁ ସମର୍ପଣ କରି ଦେବ । ଏବେ ସେହି-ଅଳ୍ପ ରସରେ ତୁମର ଆଶା ପୂର୍ଣ୍ଣ ହେବନାହିଁ, ଅଳ୍ପ ସଲିଳରେ ତୁମର ପିପାସା ମେଣ୍ଟିବ ନାହିଁ ।୧। ନିୟମ ହେଉଛି ଏହି ଯେ ରତି-ପ୍ରସଙ୍ଗ ଅଳ୍ପ ଅଳ୍ପ ବଢ଼ିବା ଉଚିତ, ଯେପରି କି ପ୍ରତିପଦାର ଚନ୍ଦ୍ରମା ବଢ଼େ । ବର୍ତ୍ତମାନ ମୋର ପ୍ରୟୋଧର-ଯୁଗ୍ମ କ୍ଷୁଦ୍ର, ଏଣୁ ତୁମ ହସ୍ତ ପୂର୍ଣ୍ଣ ହେବନାହିଁ । ହେ ହରି ! ଏଣୁ ତୁମେ ସ୍ତନ-ଯୁଗ୍ମରେ ନଖ-କ୍ଷତ କରନାହିଁ, ତୁମେ ତ ରସ-ବିଷୟରେ ପଣ୍ଡିତ ।୨। ବିଦ୍ୟାପତି କହୁଛନ୍ତି—ଅପକ୍ୱ ଡାଡ଼ିମ ପ୍ରତି କଣ ଏପରି ପ୍ରୀତି କୌଣସି ଲୋକ କରେ ।

( ୧୮ )

ଗରବେ ନା କର ହଠ ଲୁବଧ ମୁରାରି
ତୁୟା ଅନୁରାଗେ ନା ଜାଏ ବରନାରି ।
ତୁହୁ ତ ନାଗର ଗୁରୁ ହାମ ଅଗେୟାନ
କେଲି-କଲା ସବ ତୁହୁଁ ଭାଲେ ଜାନ ।୧।
ଫୁଟଲ କବରି ମୋର ଟୁଟଲ ହାର
ହାମ ଅବୁଝ ନାରି ତୁହୁଁ ତ ଗଁୱାର ।
ବିଦ୍ୟାପତି କହେ କର ଅବଧାନ
ରୋଗୀ କରୟେ ଜେସେ ଔଷଧପାନ ।୨।

---

ଶବ୍ଦାର୍ଥ – ଫୁଟଲ = ଫିଟିଗଲା, ଟୁଟଲ = ଛିଣ୍ଡିଗଲା, ଗଁଓାର = ଅବିବେଚକ, ଅବୁଝ = ଅବୋଧ ।

( ୧୯ )

ବିନୁ ମରଦନ ଟୁଟ ବନମାଲ
ସିରସ-କୁସୁମ ଦାମ କମଲକ ନାଲ ।
ଦୂତି ବଡ଼ ଦାରୁଣ ସାଧଲ ବାଦ
କଣ୍ଠ କଏଲ ସୌଁପଲ ମାଲତି ମାଦ ।୧।
ନୟନକ ଅଞ୍ଜନ ନିରଞ୍ଜନ ଭେଲ
ମୃଗମଦ-ଚନ୍ଦନ ଧାମେ ଭିଗି ଗେଲ ।
ବିଦଗଧ ମାଧବ ତୋହେ ପରନାମ
ଅବଲାରେ ବଲ ଦୟା ନା ପୂଜଇ କାମ ।୨।
ଏ ହରି ଏ ହରି, କର ଅବଧାନ
ଆନ ଦିବସ ଲଗି ରାଖହ ପରାଣ ।
ରସବତି ନାଗରି ରସ ମରିୟାଦ
ବିଦ୍ୟାପତି କହ ପୂରବ ସାଧ ।୩।

---

ଶବ୍ଦାର୍ଥ—ସୌଁପଲ = ସମର୍ପଣ କଲା,ମାଲତି ମାଦ = ମାଲତୀମାଳା, ନୟନକ = ଆଖିର, ନିରଞ୍ଜନ = ଅଞ୍ଜନଶୂନ୍ୟ, ଭିଗି = ଭିଜ, ବିଦଗଧ = ବିଦଗ୍ଧ, ସୁରସିକ, ପରନାମ = ପ୍ରଣାମ, ମରିୟାଦ = ମର୍ଯ୍ୟାଦା; ସୀମା ।

( ୨୦ )

ବୋଲନ ରସିକ ବିଲସିମା ଗୋଷ୍ଠୀ
କରେ ଧରଇତେ କତ କରୁନା ଗୋଷ୍ଠୀ ।
କତ ପରବୋଧ ଆନଲ ଅନୁରୋଧି
ନାହ ଗେହେ ସଖୀ ସୁତାୟଲ ବୋଧି ।୧।
ସୁତଲ ବିମୁଖେ ଧନୀ ଅତି ଖୀଣ ହୋଇ
ବିଡଲ ମଦନ ବାହୁଡ଼ାଇବ କୋଇ ?

ଆଁଚରେ ଝାଁପି ବଦନ ଧରୁ ଗୋଇ
ବାଦଲ ତରେ ଯସି ବେକତ ନା ହୋଇ ।୨।
ଲଗ ନାହିଁ ସରସ୍ୱେ ସୁନୟେ ନାହି ବୋଲ
ଅରୁ ବେରିବେରି କରହ୍ୱିକର ଜୋର ।
ଦୁହୁ ଭୁଜ ଗୃପି ଜୀବନ ଧନ ସାଁଚେ
କୁଚ-କାଁଚଲ କୋ ଝଫଲେ କାଁଚେ ।୩।
ଦରସନ ପରସନ ହସ୍ତ ଅନବାରେ
ମୁନ୍ଦରେ ମୁଦଲ ଜନୁ ରତନ ଭଣ୍ଡାରେ ।
ଏତଦିନେ ସଖି ସବ ଆଛୁଲ ଠାଠ
ଅବହ୍ୱ ମଦନ ପଢ଼ାୟୁବ ପାଠ ।୪।
ବିଦ୍ୟାପତି ଅତିଶୟ ସୁଖ ଭେଲ
ପରଶିତେ ତରସି କରହିଁ କର ଠେଲ ।

---

ଶବ୍ଦାର୍ଥ—ବୋଲନ = ବର, ଗ୍ଲେଷ୍ଠୀ = ସ୍ଥାନ, କରେ···କୋଷ୍ଠୀ = କର ଧରିଲା ମାତ୍ରକେ କେତେ କାରୁଣ୍ୟ ବା ଦୈନ୍ୟପ୍ରକାଶ ନ କରୁଛି; ପରବୋଧ = ପ୍ରବୋଧ ଦ୍ୱାରା, ଆନୁରୋଧି = ଅନୁରୋଧ କରି, ସୁତାଯୁଲ = ଶୁଆଇଲା, ବାଢଲ = ବଢ଼ିଲା, ଅଗ୍ରସର ହେଲା, ବାହୁଡ଼ାଇବ କୋଇ = କିଏ ବାହୁଡ଼େଇବ, ଗୋଇ = ଗୋପନ କରି,ଲୁଚାଇ, ଧରୁ = ଧରେ, ବାଦଲ = ମେଘ, ବେକତ = ବ୍ୟକ୍ତ, ପ୍ରକାଶିତ, ଲଗ = ବାକ୍ୟ, ସରସ୍ୱେ = ନିଃସୃତ ହୁଏ, ଅରୁ···ଜୋର = ଆଉ ବାରମ୍ବାର ହସ୍ତରେ ହସ୍ତଯୁକ୍ତ କରେ ଅର୍ଥାତ ହାତଯୋଡ଼େ, ଦୁହୁଁ···ସାଁଚେ = ଉଭୟ ହସ୍ତରେ ଗୃପି ଜୀବନ ଧନ ସଞ୍ଚିତ କରି ରଖେ, ଅର୍ଥାତ୍ ଲୁଚାଇ ରଖେ, ଆଉ କାହାରିକୁ ହାତ ଦେବାକୁ ଅନୁମତି ଦିଏନାହିଁ, = ଅନବାରେ = ଅନିବାର ହେବାଦ୍ୱାରା, ମୁନ୍ଦରେ···ଭଣ୍ଡାରେ = ଯେପରି କି ରତ୍ନଭଣ୍ଡାର କନ୍ଦର୍ପଦ୍ୱାରା ସମାଚ୍ଛନ୍ନ ହେଲା,ପରଶିତେ···ଠେଲ = ସମ୍ଭାଷରେ କର ଦ୍ୱାରା କର ଠେଲି ଛୁଇଁ ଦେବାରେ ।

( ୨୧ )

ଏ ହରି ବଲେ ଜନି ପରସବ ମୋୟ
ତିରି-ବଧ ପାତକ ଲାଗତ ତୋୟ ।
ତୁହୁ ରସ ଆଗର ନାଗର ଢୀଠ
ହମ ନ ବୁଝିଏ ରସ ତୀତ କି ମୀଠ ।୧।
ରସ ପରସଂଗ ଉଠଓ' ମଝୁ କାଁପ
ବାନ ହରିଣୀ ଜନୁ କଏଲହି ଝାଁପ ।
ଅସମୟ ଆସ ନ ପୂରଏ କାମ
ଭଲ ଜନ କର ନ ବିରସ ପରିନାମ ।୨।
ବିଦ୍ୟାପତି କହ ବୁଝଲହୁଁ ସାଁଚ
ଫଲହୁ ନ ମୀଠ ହୋଅଏ କାଁଚ ।

---

ଅର୍ଥ – ହେ ହରି ! ତୁମେ ଯଦି ବଳାତ୍କାର ପୂର୍ବକ ମୋତେ ସ୍ପର୍ଶ କରିବ ତେବେ ତୁମକୁ ସ୍ତ୍ରୀ ବଧର ପାପ ଲାଗିବ । ହେ ଧୃଷ୍ଟ ! ତୁମେ ହେଉଛ ରସିକମାନଙ୍କ ଅଗ୍ରଣୀ ଓ ମୁଁ ରସ ତିକ୍ତ କି ମିଷ୍ଟ ଏହା ମଧ୍ୟ ବୁଝେ ନାହିଁ ।୧। ରସର ପ୍ରସଙ୍ଗ ତମେ ଯେତେବେଳେ ଉତ୍‌ଥାପନ କରୁଛ, ସେତେବେଳେ ମୁଁ ସେହିପରି କମ୍ପି ଉଠୁଛି, ଯେପରି କି ବାଣ ବିଦ୍ଧ ହରିଣୀ କମ୍ପି ଉଠେ, ଅସମୟରେ କୃତ କାର୍ଯ୍ୟ ଦ୍ୱାରା ଆଶା ପୂର୍ଣ୍ଣ ହୁଏ ନାହିଁ ଓ ସଜ୍ଜନ ପୁରୁଷ ଏପରି କାମ କରନ୍ତି ନାହିଁ, ଯାହାର ଫଳ ରସହୀନ (ମନ୍ଦ) ହେବ ।୨। ବିଦ୍ୟାପତି କହୁଛନ୍ତି—ହେ ସୁନ୍ଦରି ! ମୁଁ ବୁଝୁଛି ତୁମ କଥା ସତ୍ୟ, ଅପକ୍ୱ ଅବସ୍ଥାରେ ଫଳ ମଧ୍ୟ ମିଷ୍ଟ ହୁଏ ନାହିଁ ।

( ୨୨ )

ଚପଲ ଲୟନ ସର ଅଥିର ସନ୍ଧାନ
ନବୀନ ସିଖାଏଲ ଗୁରୁ ପଞ୍ଚବାନ ।
ଅଗେୟାନେ କୋନ କରୟେ ବ୍ୟବହାର
ବୁଲେ ନାହିଁ ଲେଓତ ଜୀବନ ହାମାର ।୧।

ଆରତିନା କର କାନୁ ନା ଧର ଚୀର
ହାମ ଅବଲା ଅତି ରତିରଣ ଖୀର ।
ପ୍ରଥମ ବୟସ ଲେଶ ନା ପୂରବ ଆସ
ନା ପୂରେ ଅଲପ ଧନେ, ଦରିଦ ପିୟାସ ।୨।
ମାଧବ ମୁକୁଳିତ ମାଲତୀ ଫୁଲ
ଛାଡ଼େ ନାହି ଭୁଖିଲ ଭ୍ରମର ଅନୁକୂଲ ।
ଅନୁଚିତ କାଜେ ଭଲ ନାହିଁ ପରିନାମ
ସାହସ ନା କରୟେ ସଂଶୟ ଠାମ ।୩।
ଭଣଇ ବିଦ୍ୟାପତି ନାଗର କାନ
ମାତଲ କରି ନାହି ଅଙ୍କୁସ ମାନ

---

ଅର୍ଥ—ଗୁରୁ ପଞ୍ଚବାଣ, (ମଦନ) ଚଞ୍ଚଳ-ନୟନର କଟାକ୍ଷ-ରୂପ ଶରକୁ ଅସ୍ଥିର ସନ୍ଧାନ ବିଷୟରେ ନବୀନ ଶିକ୍ଷା ଦେଇ ସାରିଛନ୍ତି, କାଣ୍ଡା-କାଣ୍ଡ ଜ୍ଞାନ ନ ରଖି କେହି ବ୍ୟବହାର କରେ କି ? ବଳାତ୍କାରରେ ମୋର ଯୌବନକୁ ଗ୍ରହଣ କର ନାହିଁ ।୧। ହେ କାହ୍ନୁ ! ଆତୁରତା ପ୍ରକାଶ କର ନାହିଁ ଓ ମୋର ବସନକୁ ମଧ୍ୟ ଗ୍ରହଣ କରନାହିଁ । ମୁଁ ଅତିଶୟ ରତି-ରଣ ଖିନ୍ନା ଅବଳା ଅଟେ । ମୋର ପ୍ରଥମ (ନବୀନ) ବୟସ, ତୁମର ଲେଶମାତ୍ର ଅଭିଳାଷ ପୂର୍ଣ୍ଣ ହେବନାହିଁ, ଯେପରି ଅଳ୍ପଧନରେ ଦରିଦ୍ରର ତୃଷ୍ଣା ମେଣ୍ଟେ ନାହିଁ ।୨। ବାସନ୍ତିକା ମାଳତୀ (ପୁଷ୍ପ) ମଧ୍ୟ ମୁକୁଳିତା ହେଲେ ତା ପ୍ରତି କ୍ଷୁଧାର୍ତ୍ତ ଭ୍ରମର ମଧ୍ୟ ଅନୁକୂଳ (ଆକୃଷ୍ଟ) ହୁଏ ନାହିଁ । ଅନୁଚିତ କର୍ମର ପରିଣାମ ଉତ୍ତମ ହୁଏ ନାହିଁ ଓ ସଂଶୟଯୁକ୍ତ ସ୍ଥଳରେ ସାହସ କରି ଯାଏ ନାହିଁ ।୩। ବିଦ୍ୟାପତି କହୁଛନ୍ତି—କାହ୍ନୁ ହେଉଛନ୍ତି ନାଗର, ଉନ୍ମତ୍ତ ହସ୍ତୀ ଅଙ୍କୁଶକୁ ମଧ୍ୟ ମାନେ ନାହିଁ ।

( ୨୩ )

ସକଲ ସଖୀ ପରବୋଧି କାମିନୀ
ଆନି ଦେଲ ପିୟା ପାସ
ଜନୁ ବ୍ୟାଧ ବନ୍ଧେ ବିପିନ ମେଁ ମୃଗୀ
ତେଜଇ ଦୀଘ ନିସାସ ।୧।

ବୈଠଲି, ସପ୍ୟନ ସମୀପେ ସୁବଦନୀ
ଯତନେ ସମୁଖ ନ ହୋୟୁ ।
ଭେଲ ମାନସ ଭ୍ରମର ଦସ ଦିସ
ଦେଲ ମନମଥ ଫୋୟୁ ।୨।
କଠିନ କାମ କଠୋର କାମିନୀ
ମାନନ ଜନୁ ପରବୋଧ ।
ନବ ନୀବିବନ୍ଧ କଠିନ କଞ୍ଚୁକ
ଅଧରେ ଅଧିକ ନିରୋଧ ।୩।
ସକଲ ଗାତ ଦୁକୂଲ ଦୃଢ଼ ଅନ୍ତ
କତହୁ ନାହି ଅରକାସ ।
ପାନ ପଲୁସିତେ ପବନ ପରିହରେ
ପୂରବ କ ଗତେ ଆସ ।୪।
କାନ୍ତ କାତର କତହୁ କାକୁତି
କରତ କାମିନୀ ପାୟୁ ।
ପ୍ରାନ ପୀଡ଼ନ ରଇ ମାନଇ
ବିଦ୍ୟାପତି କବି ଗାୟୁ ।୫।

---

ଅର୍ଥ—ସକଳ ସଖୀଗଣ କାମିନୀକୁ ଆଶ୍ୱାସନା ଦେଇ, ପ୍ରିୟତମଙ୍କ ନିକଟକୁ ଆଣି ଦେଲେ । କାମିନୀ ଦୀର୍ଘ ନିଃଶ୍ୱାସ ଛାଡ଼ିଲା, ଯେପରି କି ଅରଣ୍ୟରୁ ଆନୀତା ହରିଣୀ ବ୍ୟାଧ-ବନ୍ଧନ ହେତୁ ଘନ ଘନ ନିଶ୍ୱାସ ପରିତ୍ୟାଗ କରେ ।୧। ସୁମୁଖୀ ଶଯ୍ୟା ସମୀପରେ ଉପବେଶନ କଲା, ଯତ୍ନ କଲେହେଁ ସେ ସମ୍ମୁଖବର୍ତ୍ତିନୀ ହେଲା ନାହିଁ । (ସପ୍ତମ ଓ ଅଷ୍ଟମ ପଂକ୍ତିର ଅର୍ଥ ବଡ଼ କ୍ଲିଷ୍ଟ, ପରମପଣ୍ଡିତ 'ରାଧାମୋହନ ଠାକୁର' ମହାଶୟଙ୍କ ସଂସ୍କୃତ ବ୍ୟାଖ୍ୟାନୁସାରେ ଭାବାର୍ଥ ହେଉଛି— ) ଶ୍ରୀକୃଷ୍ଣଙ୍କ ମନ ସୁରତତୃଷ୍ଣାଯୁକ୍ତ ହୋଇ ଦଶଦିଶ ଭ୍ରମଣ ପୂର୍ବକ ମଦନ-ଫୁତ୍କାର ପ୍ରଦାନ କଲା—ହେ ମଦନ ! ଏହି ନାରୀର ଅନ୍ତରରେ ଆବିର୍ଭୂତ ହୁଅ, ତେବେ ମୋର କାର୍ଯ୍ୟ ସିଦ୍ଧ ହେବ । ବହୁ ଫୁତ୍କାର ସତ୍ତ୍ୱେ ମଦନ-ସଞ୍ଚାର ନ ହେବାରୁ ପରବର୍ତ୍ତୀ ପଂକ୍ତିରେ 'କଠିନ-କାମ' ପ୍ରଭୃତି ଉଲ୍ଲିଖିତ ହୋଇଛି) ।୨।

କାମ କଠିନ ଓ କାମିନୀ କଠୋର, ଏ ଦୁହେଁ ପ୍ରବୋଧକୁ ମାନୁ ନାହାନ୍ତି । ବସ୍ତ୍ର ଗଣ୍ଠି ନିବିଡ଼, କଞ୍ଚୁକ ଶକ୍ତ ଓ ଅଧରକୁ ମଧ୍ୟ ଭଲ ଭାବରେ ନିରୋଧ କରନ୍ତି ।୩। ସର୍ବାଙ୍ଗ ଭଲଭାବେ ଦୁକୂଳାଚ୍ଛନ୍ନ, କାହିଁ ଦେଖିଲେ ଟିକଏ ପ୍ରକାଶ ନାହିଁ । ପାଣିସ୍ପର୍ଶ ଘଟିଲା ମାତ୍ରେକେ ପ୍ରାଣବିସର୍ଜନୋଦ୍ୟତା ଏହି କାମିନୀ, ଏଣୁ କେଉଁ ରୀତିରେ ଆଶା ପୂର୍ଣ୍ଣହେବ ।୪। ନାଗର କାନ୍ତ କାମିନୀ-ଚରଣରେ କେତେ କାକୁତି କଲେ, କିନ୍ତୁ ରାଇ ଏହାଙ୍କ ପ୍ରାଣ ପୀଡ଼ନ ମଣିଲେ, କବି ବିଦ୍ୟାପତି ଏହା ଗାୟନ କଲେ ।୫।

---

# ଅଭିସାର

## ( ୧ )

କରିବର-ରାଜ ହଂସ-ଗତି ଗାମିନୀ
ଚଲଲିହୁଁ ସଂକେତ-ଗେହା ।
ଅମଲ ତଡ଼ିତ ଦଣ୍ଡ, ହେମ ମଞ୍ଜରୀ
ଜିନି ଅତି ସୁନ୍ଦର ଦେହା ।୧।
ଜଲଧର, ତିମିର, ଚାମର ଜିନି କୁନ୍ତଳ
ଅଲକା ଭଙ୍ଗ ଶୈବାଲେ ।
ଭାଉଁଲତା, ଧନୁ, ଭ୍ରମର, ଭୁଜଙ୍ଗିନୀ
ଜିନି ଆଧ ବିଧୁବର ଭାଲେ ।୨।
ନଳିନୀ, ଚକୋର; ସଫରୀ ସବ ମଧୁକର
ମୃଗୀ,ଖଞ୍ଜନ ଜିନି ଆଖି ।
ନାସା ତିଲ ଫୁଲ ଗରୁଡ଼ ଚଞ୍ଚୁ ଜିନି
ଗିଧିନୀ ଶ୍ରବଣ ବିସେଖି ।୩।
କନକ-ମୁକୁର, ସସୀ, କମଲ ଜିନସ୍ତୁ ମୁଖ
ଜିନି ବିମ୍ବ ଅଧର ପ୍ରବାଲେ ।
ଦସନ-ମୁକୁତା, ଜିନି କୁନ୍ଦ କରଗବିଜ,
ଜିନି କମ୍ବୁ-କଣ୍ଠ ଆକାରେ ।୪।

ବେଲ, ତାଲଯୁଗ, ହେମ କଲଶ ଗିରି"
କଠିନ ଜନପ୍ୟା କୁଚ ସାଜା ।
ବାହୁ ମୃଣାଲ, ପାଶ ବଲ୍ଲରୀ ଜନ
ଡମରୁ ସିଂହ ଜନ ମାଝା ।୪।
ରୋମଲତା-ବଳୀ ଶୈବାଲ କଜ୍ଜଲ
ତ୍ରିବଳୀ ତରଙ୍ଗିଣୀ ରଙ୍ଗା ।
ନାଭି-ସରୋବର, ସରୋରୁହ ଦଲ ଜନ
ନିତମ୍ବ ଜନପ୍ୟା ଗଜକୁମ୍ଭା ।୬।
ଊରୁ ଯୁଗ-କଦଲୀ, କରିବର-କର ଜନ
ସ୍ଥଲ-ପଙ୍କଜ ପଦ-ପାଣି ।
ନଖ ଦାଡ଼ିମ-ବୀଜ, ଇନ୍ଦୁ, ରତନ ଜନ
ପିକ ଜନ ଅମିୟା ବାନୀ ।୬।
ଭନୟେ ବିଦ୍ୟାପତି ଅପରୂପ ମୂରତି
ରାଧା ରୂପ ଅପାରା ।
ରାଜା ସିବସିଂହ ରୂପନାରାୟଣ
ଏକାଦଶ ଅବତାର । ୮ ।

---

ଅର୍ଥ—କରିବର-ଗାମିନୀ ଓ ରାଜହଂସ ଗତି-ଗାମିନୀ ଶ୍ରୀରାଧା-ସଂକେତ-ଭବନକୁ ଚାଲିଲେ । ତାଙ୍କର ଅଙ୍ଗଯଷ୍ଟି ନିର୍ମଳ ବିଦ୍ୟୁଲ୍ଲତା ଓ ସ୍ୱର୍ଣ୍ଣ-ମଞ୍ଜରୀକୁ ଜୟ କରୁଥିଲା । ୧ । ତାଙ୍କର କେଶପାଶ, ଜଳଧର, ଅନ୍ଧକାର ଓ ଭ୍ରମରପୁଞ୍ଜକୁ ଜୟ କରୁଥିଲା ଓ ଚୂର୍ଣ୍ଣକୁନ୍ତଳ, ଭୃଙ୍ଗ ଓ ଶୈବାଳକୁ ଜୟ କରୁଥିଲା । ଭ୍ରୂଲତା, ଧନୁ, ଭ୍ରମରପଂକ୍ତି, ଓ ଭୁଜଙ୍ଗିନୀକୁ ଜୟ କରୁଥିଲା ଓ ଭାଲ ଅର୍ଦ୍ଧ-ଚନ୍ଦ୍ର (ଅଷ୍ଟମୀ ଚନ୍ଦ୍ର)କୁ ଜୟ କରୁଥିଲା । ୨ । ତାଙ୍କର ନେତ୍ର, ଚକୋର, ପଦ୍ମିନୀ, ସଫରୀ, ମଧୁକର ପଂକ୍ତି, ମୃଗୀ ଓ ଖଞ୍ଜନକୁ ଜିଣୁଥିଲା । ନାସିକା ତିଳପୁଷ୍ପ ଓ ଗରୁଡ଼ ଚଞ୍ଚୁକୁ, ତଥା ଶ୍ରବଣ, ପାଶକୁ ଜୟ କରୁଥିଲା । ୩ । ଶ୍ରୀରାଧାଙ୍କ ମୁଖ, କନକ-ଦର୍ପଣ, ଚନ୍ଦ୍ର, ଓ କମଳକୁ ତଥା ଅଧର, ବିମ୍ବଫଳ ଓ ପ୍ରବାଳକୁ ଜୟ

କରୁଥିଲା । ଦଶନ-ମୁକ୍ତା, କୁନ୍ଦପୁଷ୍ପ ଓ ଦାଡ଼ିମବୀଜକୁ, ତଥା କମ୍ବୁ ଶଙ୍ଖକୁ ଜୟ କରୁଥିଲା । ୪ । ସ୍ତନ--ବେଲ, ତାଳ, ସ୍ୱର୍ଣ୍ଣଘଟ, ଗିରି ଓ ଗିନାକୁ ତଥା ବାହୁ ମୃଣାଳ, ପାଶ ଓ କଳ୍ପଶ୍ରକୁ ତଥା କଟୀ (ମଧ୍ୟଭାଗ) ଡମରୁ ଓ ସିଂହକୁ ଜୟ କରୁଥିଲା । ୫ । ଲୋମଲତାବଳୀ—ଶୈବାଳ ଓ କଜ୍ଜଳକୁ, ତ୍ରିବଳୀ— ତରଙ୍ଗିଣୀକୁ, ନାଭି—ସରୋବର ଓ ପଦ୍ମଦଳକୁ ତଥା ନିତମ୍ବ, ଗଜ କୁମ୍ଭକୁ ଜୟ କରୁଥିଲା । ୬ । ଊରୁଯୁଗ—କଦଳୀ ସ୍ତମ୍ଭ ଓ କରିଶୁଣ୍ଡାକୁ, ପଦ ଓ ପାଣି ସ୍ଥଳପଙ୍କଜକୁ, ନଖ—ଦାଡ଼ିମବୀଜ, ବନ୍ଧୁ ଓ ରତ୍ନକୁ, ତଥା ବାଣୀ—ପିକବାଣୀକୁ ଜୟ କରୁଥିଲା । ୭ । ବିଦ୍ୟାପତି କହନ୍ତି—ଶ୍ରୀରାଧାଙ୍କ ରୂପ ଅପୂର୍ବ ରମଣୀୟ । ରାଜା ଶିବସିଂହ ରୂପ-ନାରାୟଣ ମଧ୍ୟ ଏକାଦଶ ଅବତାର ସଦୃଶ । ୮ ।

(୨)

ନବ ଅନୁରାଗିଣୀ ରାଧା
କଛୁ ନାହିଁ ମାନୟେ ବାଧା ।
ଏକଲି କୟଲ ପୟାନ
ପନ୍ଥ ବିପଥ ନାହିଁ ମାନ । ୧ ।
ତେଜଲ ମଣିମୟ ହାର
ଉଚକୁଚ ମାନୟେ ଭାର ।
କର ସଙ୍ଗେ କଙ୍କଣ ମୁଦରି
ପନ୍ଥ ହି ତେଜଲ ସଗରି । ୨ ।
ମଣିମୟ ମଞ୍ଜୀର ପାୟ
ଦୂର ହି ତେଜ ଚଲି ଯାଏ ।
ଜାମିନୀ ଘନ ଅନ୍ଧିୟାର
ମନମଥେ ହିୟେ ଉଜିୟାର । ୩ ।
ବିଘିନ ବିଥାରିତ ବାଟ
ପ୍ରେମିକ ଆୟୁଧେ କାଟ ।
ବିଦ୍ୟାପତି ମତ ଜାନ
ଐସେ ନା ହେରି ଆନ । ୪ ।

———

ଅର୍ଥ—ନବାନୁରାଗିଣୀ ଶ୍ରୀରାଧା ବାଧା-ବିଘ୍ନ ଓ ପଥ-ବିପଥ (ଭଲ ମନ୍ଦ ପଥ) ନ ମାନି ଏକାକିନୀ ଯାତ୍ରାରମ୍ଭ କଲେ ।୧। ଭୁଙ୍ଗମନକୁ ଭୟଭ୍ରାନ୍ତ କରୁଛି ବୋଲି ମନେକରି, ମଣିମୟ ହାରକୁ ପରିତ୍ୟାଗ କଲେ । ତଥା ମାର୍ଗରେ ହସ୍ତରୁ କଙ୍କଣ ଓ ମୁଦି ଆଦି ସବୁ ପରିତ୍ୟାଗ କଲେ ।୨। ପାଦରୁ ମଣିମୟ ମଞ୍ଜୀର (ନୂପୁର)କୁ ପରିତ୍ୟାଗ ପୂର୍ବକ ଶ୍ରୀରାଧା ଅଭି-ସରଣ ଆରମ୍ଭ କଲେ । ରାତ୍ରି ଘନାନ୍ଧକାରରେ ପରିପୂର୍ଣ୍ଣ କିନ୍ତୁ ଶ୍ରୀରାଧାଙ୍କ ଅନ୍ତର ମନ୍ମଥାଲୋକରେ ଉଦ୍ଭାସିତ ହୋଇଥିଲା ।୩। ସେ ବିଘ୍ନ ପୂର୍ଣ୍ଣ ପଥର ଯାବତୀୟ ବିଘ୍ନକୁ ପ୍ରେମାୟୁଧରେ କର୍ତ୍ତନ କରି ଅଗ୍ରସର ହେଲେ । ବିଦ୍ୟାପତି ଏଁହ ମନୋଭାବ ସମ୍ପର୍କରେ ଅଭିଜ୍ଞ ଅଟନ୍ତି । ଏହିପରି ଅନ୍ୟ କାହାରିକୁ ଦେଖି ନାହିଁ ।୪।

( ୩ )

ରଜନୀ ଘୋରତି ଅତି ଭୀରୁ ରମଣୀ
କତି ଧଣେ ଆଓ୍ୱବ କୁଞ୍ଜର-ଗମନୀ ।
ଭୀମ ଭୁଜଙ୍ଗମ ସରନା
କତ ସଙ୍କଟ ତାହେ କୋମଲ ଚରନା ।୧।

ଶିବ ପାୟେ କର ପରିହାର
ଅବଧିନେ ସୁନ୍ଦରି କରୁ ଅଭିସାର ।
ଗଗନ ସଘନ ମହୀ ପଙ୍କା
ବିଘିନ ବିଥାରିତ ଉପଜଏ ଶଙ୍କା । ୨ ।

ଦଶ ଦିଶ ଘନ ଅଁଧିୟାର
ଚଲଇତେ ଖଲଇ, ଲଖଇ ନାହି ପାର ।
ସବ ଯୋନି ପାଲଟି ଭୁଲଲି
ଆଓ୍ୱତ ମାନବି ଭାନତ ଲୋଲି । ୩ ।

ବିଦ୍ୟାପତି କବି କହଇ
ପ୍ରେମହି କୁଲବତୀ ପରଭବ ସହଇ ।

— — —

ଅର୍ଥ—( ଶ୍ରୀକୃଷ୍ଣଙ୍କ ଉଦ୍‌ବେଗମୟୀ ଉକ୍ତି ) ରାତି ସାନ, ରମଣୀ ଅତ୍ୟନ୍ତ ଭୟଶୀଳା, ଗଜଗାମିନୀ କେଉଁ କ୍ଷଣରେ ଆସି ପହଞ୍ଚିବ ? ପଥ ଭୀଷଣ-ସର୍ପସଂକୁଳ, ଓ ଅନ୍ୟାନ୍ୟ ସଂକଟ ମଧ୍ୟ ଅଛି, ତହିଁରେ ମଧ୍ୟ ସୁନ୍ଦରୀର ଚରଣ-ଯୁଗଳ ସୁକୋମଳ ।୧। ବର୍ତ୍ତମାନ ମୁଁ ବିଧାତାଙ୍କ ଚରଣରେ ତାଙ୍କୁ ସମର୍ପଣ କରୁଛି । ସୁନ୍ଦରୀ ନିର୍ବିଘ୍ନରେ ଅଭିସରଣ କରୁ । ଆକାଶର ମେଘାଚ୍ଛନ୍ନ ଓ ପୃଥିବୀ ପଙ୍କିଳ, ବିଦ୍ୟୁତ୍‌ସମୂହ ବିସ୍ତାରିତ ହୋଇ ରହିଛି, ଏଣୁ ମନରେ ଆଶଙ୍କା ଜାତ ହେଉଛି ।୨। ଦିଗ ମଣ୍ଡଳୀ ମେଘାଚ୍ଛନ୍ନ ହେତୁ ଅନ୍ଧକାରମୟ, ଏଣୁ ପିଚ୍ଛଳ ସମୟରେ ପଦସ୍ଖଳନ ହେଉଛି ଓ କିଛି ଲକ୍ଷ୍ୟ କରି ହେଉନାହିଁ । ସୁନ୍ଦରୀ ସିଂହାବଲୋକନ ପୂର୍ବକ (ପଛ ଆଡ଼କୁ ଅନାଇ ଦେଇ) ସମସ୍ତ ଜୀବବର୍ଗଙ୍କୁ ବିମୁଗ୍ଧ (ଆତ୍ମ-ବିସ୍ମୃତ) କରି ଦେଉଛି, ଯେପରି କି ମାନବୀ ବେଶରେ ସମାଗତା ଲକ୍ଷ୍ମୀଦେବୀ । (ଶ୍ରୀକୃଷ୍ଣଙ୍କ ଉତ୍କଣ୍ଠା ପ୍ରକାଶକ ଏହି କବିତାବଳୀର ପ୍ରଥମ ଦଶଗୋଟି ଚରଣରେ ବିଘ୍ନ ଓ ଅମଙ୍ଗଳର ସ୍ୱାଭାବିକ ଆଶଙ୍କା ପ୍ରକାଶିତ ଓ ପରବର୍ତ୍ତୀ ଦୁଇ ଚରଣ, ସମାଗତାପ୍ରାପ୍ତ ଶ୍ରୀରାଧାଙ୍କ ଦର୍ଶନ ଜନିତ ଆଶ୍ୱସ୍ତି ସୂଚକ) ।୩। କବି ବିଦ୍ୟାପତି କହୁଛନ୍ତି—କେବଳ ପ୍ରେମରେ ହିଁ କୁଳବତୀ ନାରୀ ପରାଜୟ ସହ୍ୟ କରେ ।

( ୪ )

ଆଁଚରେ ବଦନ ଝାଁପହ ଗୋରି
ରାଜା ସୁନାଇଛେ ଚୁଁଦକ ଚୋରି ।
ଘରେ ଘରେ ପହରି ଛୁଢ଼ ଗେଲଯୋୟୁ
ଅବହ୍ନି ଦେଖବ ଧନି ନାଗରୀ ତୋୟୁ ।୧

ହାସି ସୁଧାମୁଖି ନା କର ବିଜୋର
ବାନକ ଧ୍ୱନି ଧନି ବୋଲବି ଥୋର ।
ଅଧର ସମୀପ ଦସନ କରୁ ଜ୍ୟୋତି
ସିନ୍ଦୂର ସମୀପ ବସାଇଲ ମୋତି ।୨।

ସୁନ ସୁନ ସୁନ୍ଦରି ହିତ ଉପଦେଶ
ସ୍ୱପନେ ହୋୟୁ ଜନି ବିପଦକ ଲେଶ ।

ଚାନ୍ଦକ ଆଛୟେ ଭେଦ '' କଲଙ୍କ
ଓ ଯେ କଲଙ୍କୀ ତୁହୁ ନିକଲଙ୍କ ।୩।
ରାଜା ସିବସିଂହ ଲଛିମା ଦେଈ ସଙ୍ଗ
ଭନୟେ ବିଦ୍ୟାପତି ମନହୁ ନିସଙ୍କ ।

---

ଅର୍ଥ—ହେ ସୁନ୍ଦରି ! ନିଜର ଅଞ୍ଚଳରେ ମୁଖକୁ ଆବୃତ କର, (ମୁଖ, ଚନ୍ଦ୍ରଙ୍କ ଅପହରଣ କରିଥିବା ହେତୁ ଅନ୍ତରାଳରେ ରଖିବାର ଯୋଗ୍ୟ) ରାଜା ଏହି ଚନ୍ଦ୍ରଙ୍କ ଅପହରଣ ବିଷୟ ଶୁଣିଛନ୍ତି । ସେ ରାଜା ଚନ୍ଦ୍ରଙ୍କ ଅନ୍ୱେଷଣ ବିଷୟରେ ପ୍ରତିଗୃହରେ ଯେଉଁ ପ୍ରହରୀମାନଙ୍କୁ ଛାଡ଼ିଛନ୍ତି, ହେ ନାଗରି ! ସେମାନେ ବର୍ତ୍ତମାନ ତୋତେ ଦେଖି ଦେବେ ।୧। ହେ ସୁଧାମୁଖି । ହାସ୍ୟ ଦ୍ୱାରା ବିଦ୍ୟୁତ୍‌କୁ ପ୍ରକାଶ କର ନାହିଁ,ଧ୍ୱନ୍ୟାତ୍ମକ ବାଣୀକୁ ଅଳ୍ପ କହିବ । ବର୍ତ୍ତମାନ (ହାସ ବା କଥନ ସମୟରେ ) ଅଧର ନିକଟସ୍ଥ ଦଶନର ପ୍ରକାଶ ଏପରି ପ୍ରତିଭାତ ହେଉଛି ଯେପରି କି ସିନ୍ଦୂର ସମୀପରେ କେହି ମୁକ୍ତା ଖଚିତ କରି ପରି, (ସିନ୍ଦୂର ସଦୃଶ ଅଧର ଓ ଦଶନ ମୁକ୍ତା ସଦୃଶ ) ।୨। ହେ ସୁନ୍ଦରି ! ଶୁଣ, ମୋର ହିତ ଉପଦେଶକଥାକୁ ଶୁଣ; ଯହିଁରେ ସ୍ୱପ୍ନରେ ମଧ୍ୟ ବିପଦଲେଶର ସମ୍ଭାବନା ନାହିଁ । ତୁମ ମୁଖଠାରୁ ଚନ୍ଦ୍ରର ଭେଦ ହେଉଛି କଲଙ୍କ, ଏଣୁ ସେ (ଚନ୍ଦ୍ର) ହେଉଛି କଲଙ୍କୀ ଓ ତୁମ ମୁଖ ନିଷ୍କଳଙ୍କ ।୩। ରାଜା ଶିବସିଂହ ଓ ଲଛିମାଦେବୀଙ୍କ ସମଭି-ବ୍ୟାହାରୀ ବିଦ୍ୟାପତି ନିଃଶଙ୍କ ଚିତ୍ତରେ ଏହା ଭଣିଲେ ।

( ୪ )

ଅବହୁ ରାଜପଥ ପୁରଜନ ଜାଗି
ଚାନ୍ଦ-କିରନ ନଭମଣ୍ଡଲ ଲାଗି ।
ସହଏ ନ ପାରଏ ନବ-ନବ ନେହ
ହରି ହରି ସୁନ୍ଦରି ପଡ଼ଲି ସନ୍ଦେହ ।୧।
କାମିନି କଏଲ କତହୁ ପରକାର
ପୁରୁଷକ ବେସ କୟଲ ଅଭିସାର ।
ଧମ୍ମିଲ ଲୋଲ ଝୋଁଟ କଏ ବନ୍ଧ
ପହିରିଲ ବସନ ଆନ କରି ଛନ୍ଦ ।୨।

ଅମ୍ବର୍ କୁଚ ନବ୍ଧ ସମ୍ବରୁ ଭେଲ
ବାଜନ-ଜନ୍ତ୍ର ହୃଦୟ୍ କରି ଲେଲ ।
ଅଇସଏ ମିଲଲ ଧନ କୁଞ୍ଜକ ମାଝ
ହେରି ନ ଚିହ୍ନଇ, ନାଗର ରାଜ ।୩।
ହେରଇତ ମାଧବ ପଡ଼ଲହିଁ ଧନ୍ଦ
ପରଶଇତେ ଭାଙ୍ଗଲ ହୃଦୟ୍କ ଦନ୍ଦ ।
ଭନଇ ବିଦ୍ୟାପତି ସୁନ ବର ନାରି,
ଦୁଧ-ସମୁଦ୍ର ଜନି ରାଜ-ମରାଲ ।୪।

---

ଅର୍ଥ—ଏବେ ମଧ୍ୟ ରାଜ-ପଥରେ ନଗର-ବାସୀ ଜାଗ୍ରତ ଅଛନ୍ତି, ଜଗନ୍ମଣ୍ଡଳରେ (ଅର୍ଥାତ୍ ଚତୁର୍ଦ୍ଦିଗରେ) ଚନ୍ଦ୍ରକିରଣ ବିଚ୍ଛୁରିତ, (ପୂର୍ଣ୍ଣ-ଚନ୍ଦ୍ରୋଦୟ ହେଲଣି )। ସୁନ୍ଦରୀ, ନବୀନ-ପ୍ରେମର ଆଘାତକୁ ସହ୍ୟ କରି-ପାରେ ନାହିଁ । ଏଣୁ ସେ ଭ୍ରମରେ ପଡ଼ଯାଇଅଛି ।୧। ନାୟିକା, ଅଭିସରଣ ପାଇଁ ଅନେକ ଉପାୟକୁ ଅବଲମ୍ବନ କଲା । ସେ ପ୍ରଥମେ ପୁରୁଷବେଶ ଗ୍ରହଣ କଲା । ଚଞ୍ଚଳ କେଶ-ଗୁଚ୍ଛକୁ ( ସାଧୁମାନଙ୍କ ପରି) ଜଡ଼ା ଭଳି ବାନ୍ଧିଲା । ବସ୍ତ୍ରକୁ ମଧ୍ୟ ଅନ୍ୟ ପ୍ରକାରେ ପରିଧାନ କଲା ।୨। ବସନ ଦ୍ୱାରା ଉଚ୍ଚ କୁଚର ସମ୍ବରଣ ନ ହେବାରୁ, ଗୋଟିଏ ବାଦ୍ୟ-ଯନ୍ତ୍ର (ସିତାର)କୁ ହୃଦୟ ଦେଶରେ ଧରିଲା । ଏହିପରି ବେଶରେ ନାୟିକା, କୁଞ୍ଜ ମଧ୍ୟରେ ଶ୍ରୀକୃଷ୍ଣଙ୍କୁ ଦେଖା କଲାରୁ ସେ ନାଗରରାଜ (ଶ୍ରୀକୃଷ୍ଣ) ଚିହ୍ନି ପାରିଲେ ନାହିଁ ।୩। ରମଣୀକୁ ଏପରି ବେଶରେ ଦେଖି ସନ୍ଦେହ ଜନ୍ମିଲା । କିନ୍ତୁ ସ୍ପର୍ଶ କଲାକ୍ଷଣି ହୃଦୟର ସନ୍ଦେହ ଦୂରୀଭୂତ ହେଲା । ବିଦ୍ୟାପତି କହୁଛନ୍ତି--ହେ ସୁନ୍ଦରି ! ତୁମେ କ୍ଷୀର-ସାଗରର ରାଜହଂସିନୀ ସଦୃଶ (ମନୋମୁଗ୍ଧକାରୀ) ଅଟ ।୪।

---

# ବସନ୍ତ-ଲୀଳା

## ( ୧ )

ଆଏଲ ଋତୁପତି ରାଜ ବସନ୍ତ
ଧାଓଲ ଅଲିକୁଲ ମାଧବି-ପନ୍ଥ
ଦିନକର-କିରଣ ଭେଲ ପୌଗଣ୍ଡ
କେସର କୁସୁମ ଧଏଲ ହେମଦଣ୍ଡ ।୧।

ନୃପ ଆସନ ନବ ପୀଠଲ ପାତ
କାଞ୍ଚନ କୁସୁମ ଛତ୍ର ଧରୁ ମାଥ ।
ମୌଲି ରସାଲ-ମୁକୁଲ ଭେଲ-ତାୟ
ସମୁଖହି କୋକିଲ ପଞ୍ଚମ-ଗାୟ ।୨।

ସିଖିକୁଲ ନାଚତ ଅଲିକୁଲ ଯନ୍ତ୍ର
ଦ୍ୱିଜକୁଲ ଆନ ପଢ ଆଶିଷ ମନ୍ତ୍ର ।
ଚନ୍ଦ୍ରାତପ ଉଡ଼େ କୁସୁମ ପରାଗ
ମଲୟ ପବନ ସହ ଭେଲ ଅନୁରାଗ ।୩।

କୁନ୍ଦବଲ୍ଲୀ ତରୁ ଧଏଲ ନିସାନ
ପାଟଲତୂନ ଅସୋକ-ଦଲ ବାନ ।
କିଂସୁକ ଲବଙ୍ଗ-ଲତା ଏକ ସଙ୍ଗ
ହେରି ସିସିର ଋତୁ ଆଗେ ଦଲ ଭଙ୍ଗ ।୪।

ସୈନ ସାଜଲ ମଧୁ-ମଖିକା କୁଲ
ସିସିରକ ସବହୁ କଏଲ ନିରମୂଲ ।
ଉଧାରଲ ସରସିଜ ପାଓଲ ପ୍ରାନ
ନିଜ ନବ ଦଲ କରୁ ଆସନ ଦାନ ।

ନବ ବୃନ୍ଦାବନ ରାଜ ବିହାର
ବିଦ୍ୟାପତି କହ ସମୟକ ସାର ।

---

ଅର୍ଥ—ଋତୁରାଜ ବସନ୍ତର ଶୁଭାଗମନ ହେଲା । ଭ୍ରମର ସମୂହ, ବାସନ୍ତୀ-ପୁଷ୍ପ ସମୂହ ପ୍ରତି ପ୍ରଧାବିତ ହେଲେ । ସୂର୍ଯ୍ୟକିରଣ ପୌଗଣ୍ଡ (ବାଲ୍ୟ ଓ ଯୌବନର ମଧ୍ୟ ଅବସ୍ଥା)କୁ ପ୍ରାପ୍ତ ହେଲା (ଶୀତରେ ସୂର୍ଯ୍ୟ-କିରଣର ଶୈଶବାବସ୍ଥା, ବସନ୍ତରେ ପୌଗଣ୍ଡାବସ୍ଥା ଓ ଗ୍ରୀଷ୍ମରେ ଯୌବନାବସ୍ଥା କଳ୍ପନା କରାଯାଇଛି) ଓ କେଶର କୁସୁମ (ପୀତାଭ ପୁଷ୍ପବିଶେଷ) ହେମ ଦଣ୍ଡକୁ ଧାରଣ କଲା ।୧। ପୀଠଲ (ବୃକ୍ଷ-ବିଶେଷ)ର ନୂତନ-ପଲ୍ଲବ; ବସନ୍ତ-ନୃପଙ୍କର ଆସନ ହେଲା, ଓ ଚମ୍ପା ପୁଷ୍ପ ତାଙ୍କ ଶିରର ଛତ୍ର ହେଲା । ଆମ୍ର ମଞ୍ଜରୀ ବସନ୍ତର କିରୀଟ ହେଲା । ତଥା ସମ୍ମୁଖରେ କୋକିଳ ପଞ୍ଚମ ସ୍ୱରରେ ଗାନ କଲା ।୨। ମୟୂର-ଗଣ, ନାଚିବାକୁ ଲାଗିଲେ ଓ ଭ୍ରମର ଗଣ ଯନ୍ତ୍ର-ବାଦ୍ୟ ସଦୃଶ ଗୁଞ୍ଜନ ଆରମ୍ଭିଲେ । ଦ୍ୱିଜ-କୁଳ ପକ୍ଷୀ-ଗଣ (ବ୍ରାହ୍ମଣ-ବୃନ୍ଦ) ଆସି ଆଶୀର୍ବାଦ—ସୂଚକ ମନ୍ତ୍ର-ପାଠ କଲେ । କୁସୁମ-ପରାଗର ଚନ୍ଦ୍ରାତପ (ଚାନ୍ଦୁଆ) ଉଡ଼ିବାକୁ ଲାଗିଲା, ମଳୟ-ପବନ ସହିତ ଏହାର ଅନୁରାଗ ଜାତ ହେଲା ।୩। କୁନ୍ଦ-ବଲ୍ଲୀ ବୃକ୍ଷ, ନିଶାଣ (ପତାକା)କୁ ଧାରଣ କଲା । ପାଟଳ-ବୃକ୍ଷର ପତ୍ର ତୂଣୀରର କାର୍ଯ୍ୟ କଲା ଓ ଅଶୋକ ବାଣର କାର୍ଯ୍ୟକୁ ସମ୍ପାଦନ କଲା । କିଂଶୁକ (ପଳାଶ) ଓ ଲବଙ୍ଗଲତାକୁ ପରସ୍ପର ମିଶି ଯିବା ଦେଖି ଶିଶିର ଋତୁ ସହାଚରୀ ପଳାୟନ କଲା ।୪। ପୁନଃ ବସନ୍ତ ଦ୍ୱାରା ସୁସଜ୍ଜିତ ମଧୁ-ମକ୍ଷିକା ରୂପକ ସୈନ୍ୟଗଣ ଶିଶିରକୁ ନିର୍ମୂଳ କରିଦେଲେ । ଋତୁରାଜ କମଳର ଉଦ୍ଧାର କରିବାରୁ ସେ ପ୍ରାଣଦାନ ପାଇଁ ନିଜର ନବ-ପଲ୍ଲବ-ରୂପୀ ଆସନକୁ ଋତୁରାଜଙ୍କୁ ସମର୍ପଣ କଲା ।୫। କବି ବିଦ୍ୟାପତି କହୁଛନ୍ତି— ବୃନ୍ଦାବନର ନବ ଭୂମିରେ ରାଜା ବସନ୍ତ ବିହାର କରୁଛନ୍ତି, ଓ ଏହି ସମୟ ହେଉଛି ଶ୍ରେଷ୍ଠ ।

( ୨ )

ନବ ବୃନ୍ଦାବନ ନବ ନବ ତରୁଗନ
ନବ ନବ ବିକସିତ ଫୁଲ
ନବଲ ବସନ୍ତ ନବଲ ମଲୟାନିଲ
ମାତଲ ନବ ଅଲି କୁଲ ।୧।

ବିହରଇ ନବଲ କିଶୋର
କାଲିଂଦୀ-ପୁଲିନ କୁଞ୍ଜ ବନ ସୋଭନ
ନବ ନବ ପ୍ରେମ ବିଭୋର ।୨।

ନବଲ ରସାଲ-ମୁକୁଲ ମଧୁ ମାତଲ
ନବ କୋକିଲ କୁଲ ଗାୟ ।
ନବ-ଯୁବତୀ ଗନ ଚିତ ଉମତାଅଇ
ନବ ରସ-କାନନ ଧାୟ ।୩।

ନବ-ଯୁବରାଜ ନବଲ ବର ନାଗର
ମିଲଏ ନବ୍ବ ନବ ଭାଁତି ।
ନିତି ନିତି ଐସନ ନବ ନବ ଖେଲନ
ବିଦ୍ୟାପତି ମତି ମାତି ।୪।

---

ଅର୍ଥ—ନୂତନ ବୃନ୍ଦାବନ, ନବୀନ ବୃକ୍ଷଗଣ, ଓ ନବ ନବ ବିକସିତ ପୁଷ୍ପ-ସମୂହ, ନବୀନ ବସନ୍ତ, ମଳୟାନିଳ ମଧ୍ୟ ନୂତନ ତଥା ପ୍ରମତ୍ତ ଏବଂ ନବ ବୟସ୍କ ଭ୍ରମର-କୁଳ ମଧ୍ୟ ବିଦ୍ୟମାନ ।୧। ଏହି ନୂତନ-ସୃଷ୍ଟିରେ ନବଯୁବକ (ଶ୍ରୀକୃଷ୍ଣ) ବିହାର କରୁଛନ୍ତି, ଯମୁନା-ତଟର କୁଞ୍ଜ ସମୂହ ଦ୍ୱାରା ବନ ସୁଶୋଭିତ ହୋଇଅଛି ଓ ସେଠାରେ ଶ୍ରୀକୃଷ୍ଣ ନୂତନ ପ୍ରେମ-ଭାବରେ ବିଭୋର ହୋଇ ପଡ଼ିଛନ୍ତି ।୨। ନୂତନ ଆମ୍ର-ମଞ୍ଜରୀର ମଧୁ ଦ୍ୱାରା ଉନ୍ମତ୍ତ କୋକିଳ ଗାନ କରୁଅଛି । ସେହି ଗାନ ଦ୍ୱାରା ନବ-ଯୁବତୀ-ଗଣଙ୍କ ଚିତ୍ତ ଉନ୍ମତ୍ତ ହୋଇ ଉଠୁଛି । ଏପରି ଜଣାଯାଉଛି ଯେପରିକି ନବ-ରସ (ଶୃଙ୍ଗାର-ରସ) କାନନ ମଧ୍ୟରେ ଧାବିତ ହେଉଛି ।୩। ଶ୍ରୀକୃଷ୍ଣ ହେଉଛନ୍ତି ଯୁବକ ଶ୍ରେଷ୍ଠ ଓ ଶ୍ରୀରାଧା ହେଉଛନ୍ତି ରମଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠା । ଉଭୟେ ବିବିଧ ପ୍ରକାରରେ ପରସ୍ପର ମିଳୁଛନ୍ତି, ପ୍ରତିଦିନ ଏହିପରି ନବୀନ ନବୀନ କ୍ରୀଡ଼ାରେ ବିଦ୍ୟାପତିଙ୍କ ବୁଦ୍ଧି ମାଦକତାର ଅନୁଭବ କରୁଛି ।୪।

( ୩ )

ମଧୁ ଋତୁ ମଧୁକର ପାନ୍ତି
ମଧୁର କୁସୁମ ମଧୁ ମାତି ।
ମଧୁର ବୃନ୍ଦାବନ ମାଝ
ମଧୁର ମଧୁର ରସ-ରାଜ ।୧।

ମଧୁର ଯୁବତି ଜନ ସଙ୍ଗ
ମଧୁର ମଧୁର ରସ ରଙ୍ଗ
ମଧୁର ମୃଦଙ୍ଗ ରସାଲ
ମଧୁର ମଧୁର କରତାଲ ।୨।

ମଧୁର ନଟନ-ଗତି ଭଙ୍ଗ
ମଧୁର ନଟନୀ ନଟ ସଙ୍ଗ ।
ମଧୁର ମଧୁର ରସ ଗାନ
ମଧୁର ବିଦ୍ୟାପତି ଭାନ ।୩।

ଅର୍ଥ—ବସନ୍ତ ଋତୁରେ ଭ୍ରମରମାନଙ୍କର ଶ୍ରେଣୀ ମଧୁର-କୁସୁମର ମକରନ୍ଦ ପାନ ଦ୍ୱାରା ଉନ୍ମତ୍ତ ହୋଇଛନ୍ତି । ସୁନ୍ଦର ବୃନ୍ଦାବନରେ ରସର ମନୋ—ମୁଗ୍ଧକର ଅନେକ ସାଧନ ବିଦ୍ୟମାନ । ସୁନ୍ଦର ଯୁବତିମାନଙ୍କ ସହ ମଧୁର କାମ-କ୍ରୀଡ଼ା ହେଉଅଛି । ମଧୁର ମୃଦଙ୍ଗ ଓ କରତାଳ ଆଦି ବାଦ୍ୟ ବାଜୁଅଛି । ମଧୁର ନୃତ୍ୟର ଭାବ-ଭଙ୍ଗୀ, ଓ ମଧୁର ନର୍ତ୍ତକୀ ସହ ମଧୁର ନଟର ମିଳନ ହେଉଅଛି । ରସିକ କବି ବିଦ୍ୟାପତି କହୁଛନ୍ତି— ଗାନ ମଧ୍ୟ ମଧୁର ଓ ରସମୟ ହୋଇଅଛି ।

( ୪ )

ଋତୁପତି-ରାତି ରସିକ ରସରାଜ
ରସମୟ ରାସ ରଭସ ରସ ମାଝ ।
ରସମତି ରମଣ-ରତନ ଧନ ରାହି
ରାସ ରସିକ ସହ ରସ ଅବଗାହି ।୧।

ରଂଗିନି ଗନ ସବ ରଂଗହି ନଟଇ
ରନରନି କଙ୍କନ କିଂକିନ ରଟଇ ।
ରହି ରହି ରାଗ ରଚୟ ରସବଂତ
ରତି ରତ ରଭିନି ରମନ ବସଂତ ।୨।

ରଟତି ରବାବ ମହତିକ ପିନାସ
ରାଧା ରମନ କରୁ ମୁରଲି ବିଲାସ ।

ରସମୟ ବିଦ୍ୟାପତି କବି ଭାନ
ରୂପ ନାରାୟନ ଭୂପତି ଜାନ ।୩।

---

ଅର୍ଥ—ବସନ୍ତ ରଜନୀରେ ରସିକ-ରସରାଜ (ଶ୍ରୀକୃଷ୍ଣ) ଚନ୍ଦ୍ରକିରଣ ମଧ୍ୟରେ ରସମୟ ରାସ-କ୍ରୀଡ଼ା କରୁଛନ୍ତି । ରସବତୀ ରମଣୀମାନଙ୍କ ମଧ୍ୟରେ ରତି-ସ୍ୱରୂପିଣୀ ଧନୀ ରାଇ (ଶ୍ରୀରାଧା) ରସ ରସିକ (ଶ୍ରୀକୃଷ୍ଣ)ଙ୍କ ସଙ୍ଗେ ରସାବଗାହନରତପ୍ରିୟ ।୧। ରସବତୀ ରମଣୀ—ମଣ୍ଡଳୀ ରସିକ ଗଣଙ୍କ ସହ ନୃତ୍ୟ କରୁଛନ୍ତି, ଏଣୁ କଙ୍କଣ ଓ କିଙ୍କିଣୀମାନଙ୍କର ରଣ-ରଣ ଧ୍ୱନି ହେଉଛି । ରସିକ କୃଷ୍ଣ ରହି ରହି ରାଗର ଧ୍ୱନି ରଚନା କରୁଛନ୍ତି । ଏହିପରି ବସନ୍ତ ଋତୁରେ ସେ ରତି-ଲୀନ ହୋଇ ଅନୁରାଗିଣୀମାନଙ୍କ ସହ ରମଣ କରୁଛନ୍ତି ।୨। ରବାବ (ବେହେଲା ସଦୃଶ ବାଦ୍ୟଯନ୍ତ୍ର ବିଶେଷ) ମହତିକ (ବୀଣା ବିଶେଷ) ଓ ପିନାସ ଆଦି ବାଦ୍ୟଯନ୍ତ୍ର ଶବ୍ଦାୟମାନ ଓ ରାଧା-ବଲ୍ଲଭ (ଶ୍ରୀକୃଷ୍ଣ) ବଂଶୀ-ବିଳାସ କରୁଛନ୍ତି । ବିଦ୍ୟାପତି କବି ରସମୟ ବାଣୀରେ କହୁଛନ୍ତି—ରାଜା ରୂପନାରାୟଣ ଏହି ରସକୁ ଜାଣୁଛନ୍ତି ।୩।

( ୫ )

ବାଜତ ଦ୍ରିଗି ଦ୍ରିଗି ଧୌଦ୍ରିମ ଦ୍ରିମିୟା ।
ନଟତି କଲାବତି ମାତି ଶ୍ୟାମ ସଙ୍ଗ
କର କରତାଲ ପ୍ରବନ୍ଧକ ଧ୍ୱନିୟା ।୧।

ଡମ ଡମ ଡମ୍ଫ ଡିମିକ ଡିମ ମାଦଲ
ରୁନୁ ରୁନୁ ମଞ୍ଜୀର ବୋଲ ।

କିଙ୍କିଣି ରଣରଣି ବଳଁଆ କଣକଣି
ନିଧୁବନ ରାସ ତୁମୁଲ ଉତରୋଲ ।୨।
ବୀନ, ରବାବ, ମୁରଜ ସ୍ୱର-ମଣ୍ଡଲ
ସା, ରି, ଗ, ମ, ପ; ଧ, ନି, ସା, ବହୁବିଧ ଭାବ ।
ଘଟିତା ଘଟିତା ଧ୍ୱନି ମୃଦଙ୍ଗ ଗରଜନି
ଚଞ୍ଚଲ ସ୍ୱର-ମଣ୍ଡଲ କରୁରାବ ।୩।
ସ୍ରମ ଭର ଗଳିତ ଲୁଳିତ କବରୀଯୁତ
ମାଲତି ମାଲ ବିସ୍ଥାରଲ ମୋତି ।
ସମୟ ବସଂତ ରାସ ରସ ବର୍ଣ୍ଣନ
ବିଦ୍ୟାପତି ମତି ଛୋଭିତ ହୋତି ।୪।

---

ଶବ୍ଦାର୍ଥ—

(୧) ବାଜତ = ବାଜୁଛି ।

(୨) ନଟତ = ନୃତ୍ୟ କରୁଛନ୍ତି, କଳାବତି = ନୃତ୍ୟଗୀତାଦି ୬୪ କଳା-ବିଦ୍ୟାରେ ଅଳଙ୍କୃତା ନାରୀ ।—

(୩) ହସ୍ତଦ୍ୱାରା ତାଳ ନିର୍ଦ୍ଦେଶକ ଧ୍ୱନି କରୁଛନ୍ତି ।

(୪) ଡ଼ିଂଫ ଓ ମାଦଳ = ବାଦ୍ୟଯନ୍ତ୍ର ବିଶେଷର ନାମ ।

(୫)ମଞ୍ଜୀର = ନୂପୁର, ବୋଲ = ଧ୍ୱନି, ସ୍ୱର, ଶବ୍ଦ ।

(୬) କନକ ଓ ମଣିମଣ୍ଡିତ ବଳୟ ଓ କଙ୍କିଣୀର ମୃଦୁଧ୍ୱନି ।

(୭) ଉତରୋଲ = ଉଚ୍ଚଶବ୍ଦ, ନିଧୁବନ = ରାସଲୀଳାରେ ବିବିଧ ଗୀତ = ବାଦ୍ୟ ଧ୍ୱନିର ସମ୍ମିଶ୍ରଣ ନିବନ୍ଧନ ଉଚ୍ଚଶବ୍ଦ ହେବାକୁ ଲାଗିଲା ।

(୮) ସ୍ୱରମଣ୍ଡଳ = ତନ୍ତ୍ରୀନିର୍ମିତ ଯନ୍ତ୍ର ବିଶେଷ ।

(୧୧) ଏକୁରବ = ଐକ୍ୟତାନ, ସମସ୍ୱର, ଅର୍ଥାତ୍ ପରସ୍ପର ସାପେକ୍ଷ ଶବ୍ଦ ।

(୧୨-୧୩) ଶ୍ରମଭରେ ସିକ୍ତହେବାରୁ ଗଳିତ ଓ ବିଲୋଳିତ କବରୀରେ ସଂଯୁକ୍ତା ମୁକ୍ତା ଓ ମାଳତୀମାଳ ଖୋଲି ପକାଇଲେ ।

(୧୫) ନୋହିଁ = ହେଉଅଛି, ହୁଏ, । ବସନ୍ତ କାଳୀନ ରାସ-ରସ ବର୍ଣ୍ଣନରେ ବିଦ୍ୟାପତିଙ୍କ ମତି କ୍ଷୁବ୍ଧ ହେଉଛି, ଅର୍ଥାତ୍ ସେ ନିଜକୁ ଯଥୋଚିତ ବର୍ଣ୍ଣନା ସମ୍ପର୍କରେ ଅସମର୍ଥ ମଣି, ଦୁଃଖିତ ହେଉଛନ୍ତି ।

## ମାନ

### ( ୧ )

ଏ ଧନି ମାନିନି କରହ ସଞ୍ଜାତ
ତୁଅ କୁଚ ହେମ- ଘଟ ହାର ଭୁଜଙ୍ଗିନି
ତାକ ଉପର ଧରି ହାତ । ୧ ।

ତୋହେ ଛୋଡ଼ି ଯଦି ହମ ପରସବ କୋଏ
ତୁଅ ହାର-ନାଗିନି କାଟବ ମୋଏ ।
ହମର ବଚନ ଯଦି ନହି ପରତୀତ
ବୁଝି କରହ ସାତି ଯେ ହୋଏ ଉଚିତ । ୨ ।

ଭୁଜ-ପାସ ବାଁଧି ଜଘନ-ତର ତାରି
ପୟୋଧର-ପାଥର ହିୟ ଦହ ଭାରି ।
ଉର-କାରା ବାଁଧି ରାଖ ଦିନ-ରାତି
ବିଦ୍ୟାପତି କହ ଉଚିତ ଇହ ସାତି । ୩ ।

---

ଅର୍ଥ— ହେ ମାନବତୀ ରମଣି ! ନିଜକୁ ସଂଯତ କର, ( ସୁବର୍ଣ୍ଣ ଓ ସର୍ପକୁ ସ୍ପର୍ଶ କରି ଶପଥ କରିବା ପ୍ରାମାଣିକ, ଏପରି ପ୍ରବାଦ ଅଛି ) ଏଣୁ ମୁଁ ତୁମର ସ୍ତନ-ରୂପକ ସୁବର୍ଣ୍ଣଘଟ ଓ ହାର ରୂପକ-ସର୍ପିଣୀ ଉପରେ ହାତ ରଖି ଶପଥ କରୁଛି । ୧ । ଯଦି ତୁମ ବ୍ୟତୀତ ଅନ୍ୟ କାହାରିକୁ ସ୍ପର୍ଶ କରିବି, ତେବେ ତୁମର ହାର-ରୂପକ ସର୍ପିଣୀ ମୋତେ ଦଂଶନ କରୁ । ଯଦି ମୋ ବଚନରେ ତୁମର ବିଶ୍ୱାସ ହେଉନାହିଁ, ତେବେ ବୁଝି ସୁଝି ଉଚିତ ଶାସ୍ତି ବିଧାନ କର ।୨। ନିଜର ଭୁଜରୂପକ ପାଶ ( ରଜ୍ଜୁ ) ରେ ବାନ୍ଧି, ଉଭୟ ଜଘନ ମଧ୍ୟରେ ତାଡ଼ନା ଦେଇ ଓ ସ୍ତନ ରୂପକ ଭାରୀ ପଥରକୁ ମୋ ହୃଦୟ ଉପରେ

ରଖି , ଅତିହାରାନ ନିଜର ହୃଦୟ ରୂପକ କାରାଗାରରେ ବାନ୍ଧି ରଖ ।
କବି ବିଦ୍ୟାପତି କହୁଛନ୍ତି—ଏହାଙ୍କୁ ଉଚିତ ଦଣ୍ଡ ହେବ ।୩।

( ୨ )

ଗ୍ରେଣ୍ଡଲ ଆଭରଣ ମୁରଲି-ବିଲାସ
ପଦତଳେ ଲୁଠଇ ସୋ ପୀତବାସ ।
ଜାକ ଦରସ ବିନେ ଝୁରଯେ ନୟାନ
ଅବ ନାହ ହେରସି ତାକ ବୟାନ ।୧।

ସୁନ୍ଦରି ତେଜହୁ ଦାରୁନ ମାନ
ସାଧଯେ ଚରନ ରସିକବର କାନ ।
ଭାଗେ ମିଲୟେ ଇହ ସ୍ୟାମ ରସବନ୍ତ
ଭାଗେ ମିଲୟେ ଇହ ସମୟ ବସନ୍ତ ।୨।

ଭାଗେ ମିଲୟେ ହେନ ପ୍ରେମ ସଙ୍ଗାତି
ଭାଗେ ମିଲୟେ ଇହ ସୁଖମୟ ରାତି ।
ଆଜୁ ଜଦି ମାନିନି ତେଜବି କାନ୍ତ
ଜନମ ଗୋଙାୟବି ରୋଇ ଏକାନ୍ତ ।୩।

ବିଦ୍ୟାପତି କହେ ପ୍ରେମକ ରୀତ
ଯାଚିତ ତେଜି ନା ହୋଇ ସମୁଚିତ ।

---

ଅର୍ଥ—ସେହି ପୀତବସ୍ତ୍ର ପରିଧାନକାରୀ (ଶ୍ରୀକୃଷ୍ଣ) ଭୂଷଣ ଓ ବଂଶୀବାଦନଲୀଳାକୁ ପରିତ୍ୟାଗ କରି ବର୍ତ୍ତମାନ ତୋର ପଦତଳରେ ପତିତ ହୋଇଛନ୍ତି । ଯାହାଙ୍କର ଦର୍ଶନ ବିନା ତୁମର ନେତ୍ରରୁ ଲୋତକ ବର୍ଷଣ ହେଉଥିଲା, ଏବେ ତାଙ୍କର ମୁଖଦର୍ଶନ କରୁନାହିଁ ।୧। ହେ ସୁନ୍ଦରି ! ଦାରୁଣ ମାନକୁ ପରିତ୍ୟାଗ କର, ରସିକବର କାହ୍ନୁ ତୋର ଚରଣରେ ସାଧନା କରୁଛନ୍ତି, ଏହି ସୁରସିକ ଶ୍ୟାମ ସୌଭାଗ୍ୟରେ ମିଳନ୍ତି ଓ ଏହି ବସନ୍ତ ସମୟ ମଧ୍ୟ ସୌଭାଗ୍ୟରେ ପ୍ରାପ୍ତ ହୁଏ ।୨। ସୌଭାଗ୍ୟ ହେଲେ, ଏହିପରି ପ୍ରେମମୟ ସହଚର ମିଳନ୍ତି ଓ ଏହି ସୁଖମୟ ରଜନୀ ମଧ୍ୟ ଭାଗ୍ୟ ବଶତଃ ମିଳିଥାଏ, ହେ ମାନିନି ! ଯଦି ଆଜ ମଧ୍ୟ କାନ୍ତକୁ ତ୍ୟାଗ କରିବୁ

ତେବେ ଏକାନ୍ତରେ କନ୍ଦନଦ୍ୱାରା ହିଁ ଏହି ଜନ୍ମ ଯାପନ କରିବୁ ।୩। ବିଦ୍ୟାପତି କହୁଛନ୍ତି—ଯାଚିତ ପ୍ରୀତିକୁ ପ୍ରତ୍ୟାଖ୍ୟାନ କରିବା ସମୁଚିତ ନୁହେଁ ।

( ୩ )

ତୋହାରି ବିରହ—                    ବେଦନେ ବାଉର
ସୁନ୍ଦର ମାଧବ ମୋର ।
ଷଣେ ସଚେତନ                    କ୍ଷଣେ ଅଚେତନ
କ୍ଷଣେ ନାମ ଧରେ ତୋର ।୧।
ରମା ହେ ! ତୋ ବଡ଼                    କଠିନ ଦେହ
ଗୁଣ ଅପଗୁଣ                    ନା ବୁଝି ତେଜବି
ଜଗତ ଦୁଲହ ଲେହ ।୨।
ତୋହାରି କାହାନି                    କହିତେ ଜାଗଲ
ସୁନଇ ଦେଖଇ ତୋୟ ।
ନା ଘର ବାହିରେ                    ଧୈରଜ ନା ଧରେ
ପଥ ନିରଖିଏ ରୋଏ ।୩।
କତ ପରବୋଧି                    ନା ମାନେ ରହସି
ନା କରେ ଭୋଜନ ପାନ
କାଠ ମୂରତି                    ଜୀବନ ଆଛୟେ
କବି ବିଦ୍ୟାପତି ଭାନ ।୪।

---

ଅର୍ଥ— ମୋର ସୁନ୍ଦର ମାଧବ, ତୁମ ବିରହ-ବେଦନାରେ ବର୍ତ୍ତମାନ ବାତୁଳ ହୋଇଛନ୍ତି, ଏକ କ୍ଷଣରେ ସଚେତନ ଓ ଅନ୍ୟ କ୍ଷଣରେ ଅଚେତନ, ଏବଂ ଅପର କ୍ଷଣରେ ତୋର ନାମ କୀର୍ତ୍ତନ କରୁଛନ୍ତି ।୧। ହେ ରମଣି ! ତୁ ବଡ଼ କଠିନହୃଦୟା, ଗୁଣ ଓ ଅପଗୁଣକୁ ନ ବୁଝି, ଜଗତରେ ଦୁର୍ଲଭ ସ୍ନେହକୁ ତ୍ୟାଗ କରୁଅଛୁ ।୨। ତୋ ବିଷୟକ କଥା କହିବାରୁ ତାଙ୍କର ଚେତନା ଆସିଲା, ତୋତେ ଦେଖୁଛନ୍ତି, ଓ ତୋରକଥା ଶୁଣୁଛନ୍ତି, ଘରେ ଓ ବାହାରେ କେଉଁଠାରେ ମଧ୍ୟ ଧୈର୍ଯ୍ୟ ଧାରଣ କରୁ ନାହାନ୍ତି,

ଝନ୍ଦନରତ ହୋଇ ତୋହର ମାର୍ଗକୁ ଅବଲୋକନ କରୁଛନ୍ତି ।୩। ଏକାନ୍ତରେ ଅନେକ ପ୍ରକାରର ପ୍ରବୋଧ ଦେଲେ ମଧ୍ୟ, ଭୋଜନ ଓ ପାନ କରୁନାହାନ୍ତି କାଷ୍ଠ-ମୂର୍ତ୍ତି ପରି ସ୍ଥିର ହୋଇ ପଡ଼ିଛନ୍ତି. ଏପରି କବି ବିଦ୍ୟାପତି କହୁଛନ୍ତି ।୪।

( ୪ )

ଦିବସ ତିଲ ଆଧ ରଖିବ ଯୌବନ
ବହଇ ଦିବସ ସବ ଜାବ ।
ଭାଲ ମନ୍ଦ ଦୁଇ ସଙ୍ଗେ ଚଲି ଜାଯବ
ପର ଉପକାର ସେ ଲାଭ ।୧।
ସୁନ୍ଦରି ହରିବଧେ ତୁହୁ ଭେଲି ଭାଗି
ରାତି ଦିବସ ସୋଇ ଆନ ନହି ଭାବଇ
କାଲି ବିରହ ତୁୟା ଲାଗି ।୨।
ବିରହ ସିନ୍ଧୁ ମାହା ଡୁବଇତେ ଆଛୟେ
ତୁୟା କୁଚ-କୁମ୍ଭ ଲଖି ଦେଇ ।
ତୁହୁ ଧନି ଗୁନବତି, ଉଧାର ଗୋକୁଲ ପତି
ତ୍ରିଭୁବନ ଭରି ଯଶୋ ଲେଇ ।୩।
ଲାଖ ଲାଖ ନାଗରି ଯୋ କାନୁ ହେରଇ
ସୋ ସୁଭ-ଦିନ କରି ମାନ ।
ତୁୟା ଅଭିମାନ ଲାଗି ସୋଇ ଆକୁଲ
କବି ବିଦ୍ୟାପତି ଭାନ ।୪।

---

ଅର୍ଥ—ଅଳ୍ପ ସମୟ ତୁ ଯୌବନକୁ ରକ୍ଷାକରିବୁ, କାରଣ ଦିନ,ପାଣି ସୁଅ ପରି ବୋହି ଯାଉଅଛି । ଭଲ ଓ ମନ୍ଦ ଏହି ଦୁଇଟି ସଙ୍ଗରେ ଜିବ , ଏଣୁ ପର ଉପକାରରେ ଲାଭ । ୧ । ହେ ସୁନ୍ଦରି ! ହରିଙ୍କ ବଧ ବିଷୟରେ ତୁ ଭାଗୀ ହେଲୁ, ରାତି ଓ ଦିବସ ସେ ତୋ ବିନା ଆଉ କିଛି ଭାବୁନାହାନ୍ତି ତୋହରି କାରଣରୁ ଜାତ ବିରହ ତାଙ୍କର କାଳ ହେଲା । ୨ । ବିରହ-ସମୁଦ୍ର ମଧ୍ୟରେ ସେ ନିମଜ୍ଜିତ ହେଉଛନ୍ତି, ତୁ ନିଜର କୁଚ କୁମ୍ଭ ଦେଖାଇ ଦେ , ହେ ଗୁଣବତି ସୁନ୍ଦରି ! ତୁହି ଗୋକୁଳପତିଙ୍କୁ ଉଦ୍ଧାର କର, ଓ ତ୍ରିଭୁବନର ଯଶକୁ ଗ୍ରହଣ କର ।୩। ଲକ୍ଷ ଲକ୍ଷ ନାଗରୀ କାହ୍ନୁକୁ ଯେଉଁ

ବଦନ ଦେଖନ୍ତୁ, ସେହି ଦର୍ଶନ ବିବସକୁ ଶୁଭଦିନ ବୋଲି ମଣନ୍ତି ! ସେହି କାହ୍ନୁଙ୍କୁ ତୁ ଆଜି ଅଭିମାନ କରି ବ୍ୟାକୁଳ କରୁଛୁ । ଏପରି କବି ବିଦ୍ୟାପତି କହୁଛନ୍ତି । ୪ ।

( ୫ )

ସଖି ହେ, ନା ବୋଲ ବଚନ ଆନ
ଘଟେ ଘଟେ ଶ୍ୟାମ ଅଲପ ଚିହ୍ନିନୁ
ଯେସନ କୁଟିଲ କାହ୍ନ । ୧ ।
କାଠ କଠିନ କମୂଲ ମୋଦକ
ଉପରେ ମାଖିଯା ଗୁଡ଼ ।
କନୟା କଲସ ବିଷେ ପୁରାଇୟା
ଉପରେ ଦୁଧକ ପୂର । ୨ ।
କାନୁ ସେ ସୁଜନ, ଶ୍ୟାମ ଦୁରଜନ
ତାହାର ବଚନେ ଯାଇ ।
ହୃଦୟ ମୁଖେ ତେ ଏକ ସମତୁଲ
କୋଟିକେ ଗୁଟିକ ପାଇ । ୩ ।
ଯେ ଫୁଲେ ଭେଜସି ସେ ଫୁଲ ପୂଜସି
ସେ ଫୁଲେ ଧରସି ବାନ ।
କାନୁର ବଚନ ଐସନ ଚରିତ
କବି ବିଦ୍ୟାପତି ଭାନ । ୪ ।

---

ଅର୍ଥ —ହେ ସଖି ! ଆଉ ଅନ୍ୟ କଥା କହନା , କାହ୍ନୁ ଯେପରି କୁଟିଳ, ତାହା ମୁଁ ଭଲ ଭାବରେ ଅଳ୍ପକେ ଚିହ୍ନିନେଲି ।୧। କଠିଣ କାଠରେ ଗୁଡ଼ ବୋଳି ମୋଦକ ( ମୁଆଁ ) ତିଆରି ହୋଇଛି । ୨ । ସୁବର୍ଣ୍ଣ କଳସ ଭିତରେ ବିଷ ପୂର୍ଣ୍ଣକରି , ଉପରେ ଦୁଗ୍ଧ ପୂରିତ ହୋଇଛି ।୨। କାହ୍ନୁ ଏକା ସୁଜନ ମୁଁ ତାଙ୍କ କଥା ସବୁ ଶୁଣିଛି , ତେଣୁ ମୁଁ ହେଉଛି ଦୁର୍ଜନୀ ବା ଦୋଷୀ , ହୃଦୟ ( ମନ ) ଓ ମୁଖକୁ ଏକା ବେଳକେ ସମତୁଲ କରୁ ରଖିବା ଲୋକ କୋଟିକରେ ଗୋଟିଏ ମିଳେ ସିନା ।୩। ସେ ଯେଉଁ ଫୁଲ ଫିଙ୍ଗିଦିଏ ସେହି ଫୁଲରେହିଁ ପୂଜା କରେ, ପୁଣି ସେହିଫୁଲରେ ହିଁ ବାଣ ଧରେ । କବି ବିଦ୍ୟାପତି ଏ ଭଳି ଭାବରେ କାହ୍ନୁର ବଚନ ଓ ଚରିତ ଭଣିଲେ । ୪ ।

( ୭୨ )

ହରି ବଡ଼ ଗରବୀ ଗୋପୀ ମାଝେ ବସଇ
ଐସେ କରବ ଜୈସେ ବୈରୀ ନା ହସଇ ।
ପରିଚୟ କରବ ସମୟ ଭଲ ଗୃଝ
ଆଜୁ ବୁଝବ ହମ ତୁୟା ଚତୁରାଇ ।୧।

ପହିଲହି ବୈଠବ ସ୍ୟାମ କରି ବାମ
ସଂକେତେ ଜାନାୟବ ହମାରି ପରନାମ ।
ପୁଛଇତେ କୁସଲ ଉଲଟାୟବ ପାଣି
ବଚନ ନା ବାଲବ ସୁନବ ସୟାନି ।୨।

ହରି ପଦ ଫେରି ପୁଛବ ଧନି ତୋୟ
ଇଙ୍ଗିତେ ନିବେଦନ ଜାନାୟବ ମୋୟ ।
ଜବ ରତେ ଦେଖବ ବଡ଼ ଅନୁରାଗ
ତୈଖନେ ଜାନାୟବ ହୃଦୟେ ଜନୁ ଲାଗ ।୩।

ସଖୀଗଣ ଗଣଇତେ ତୁହୁଁ ସେୟାନି
ତୋହେ କି ସିଖାୟବ ଚତୁରିମ ବାନି ।
ଇହ ରସ ବିଦ୍ୟାପତି କବି ଭାନ
ମାନ ରହୁକ ପୁନ ଯାଉକ ପରାନ ।୪।

---

ଅର୍ଥ—(ଏହି ପଦାବଳୀରେ ସଖୀମାନଙ୍କର ଶ୍ରୀମତୀଙ୍କ ପ୍ରତି ସୂଚନା ସନ୍ନିବିଷ୍ଟ, ସୁତରାଂ ଏହା 'ସଖୀ-ଶିକ୍ଷା' ସଂପୃକ୍ତ ଅଂଶର ଉପଯୋଗୀ, କିନ୍ତୁ ମୂଳଗ୍ରନ୍ଥାବଳୀରେ 'ମାନ' ମଧ୍ୟରେ ଏହାର ସଂଯୋଜନ ହୋଇ ଥିବାରୁ ଅନୁବାଦରେ ମଧ୍ୟ ଏହାର ସ୍ଥାନ ଅପରିବର୍ତ୍ତିତ ରହିଲା)

ଅର୍ଥ—ଗୋପୀମାନଙ୍କ ମଧ୍ୟରେ ବାସ କରି, ହରି ବଡ଼ ଗର୍ବିତ ହୋଇଛନ୍ତି, ତେଣୁ ତୁ ଏଭଳି ବ୍ୟବହାର ପ୍ରଦର୍ଶନ କରିବୁ, ଯହିଁରେ ଶତ୍ରୁମାନେ ନ ହସିବେ । ଉତ୍ତମ ସମୟ ଦେଖି ପରିଚୟ କରିବୁ, ଆଜି ଆମ୍ଭେମାନେ ତୋର ଚାତୁରୀକୁ ବୁଝିବୁ ।୧। ପ୍ରଥମରୁ ତୁ ଶ୍ୟାମଙ୍କ ବାମ ପାର୍ଶ୍ୱରେ ବସିବୁ ଓ ସଙ୍କେତ ଦ୍ୱାରା ଆମମାନଙ୍କର ପ୍ରଣାମ ଜଣାଇବୁ,

କୁଶଳ ପ୍ରଶ୍ନ ପଚାରିଲେ ହାତ ଓଲଟାଇ (କୁଶଳକୁ) ଜଣାଇବୁ, ଅର୍ଥାତ୍ ନିଷେଧ କରିବୁ, ହେ ଚତୁର ! ବଚନ-ବନ୍ଧା ହେବୁ ନାହିଁ, ଅର୍ଥାତ୍ ତାଙ୍କ କଥାରେ ଯୋଗ ଦେବୁ ନାହିଁ ।୨। ହେ ସୁନ୍ଦରି ! ହରି ଯଦି ତୋତେ ପୁନଃ କିଛି ପଚାରନ୍ତି, ତେବେ ମୋତେ ଇଙ୍ଗିତ ଦ୍ୱାରା ତାଙ୍କ ନିବେଦନକୁ ଜଣାଇବୁ । ଯେତେବେଳେ ଦେଖିବୁ ତାଙ୍କ ଶରୀରରେ ଅନୁରାଗ ବୃଦ୍ଧି ପାଉଛି ସେତେବେଳେ ହୃଦୟକୁ ଲାଗିବାଭଳି (ମର୍ମଭେଦୀ ବା ହୃଦୟସ୍ପର୍ଶୀ)ବାକ୍ୟ କହିବୁ ।୩। ସଖୀମାନଙ୍କ ଗଣନାରେ ତୁ ହେଉଛୁ ସୁଚତୁରା,ତେଣୁ ତୋତେ ଆଉ ଚତୁରତାର କଥା ଶିଖାଇବ କିଏ ? ବିଦ୍ୟାପତି କବି ଏହିପରି ରସର କଥା କହୁଛନ୍ତି—ପ୍ରାଣ ପଛେ ଯାଉ ମାନ ରହୁ ।୪।

( ୭ )

ସୁନଇତେ ଐସନ ରଇକ ବାମା
ନାହ ନିକଟେ ସଖୀ କଏଲ ପୟାମା ।
ଦୂର ସଓଁ ସେ ସଖି ନାଗର ହେରି
ତୋଡ଼ଇ କୁସୁମ ନେହାରଇ ଫେରି ।୧।
ହେରଇତେ ନ ଗର ଆଓଲ ତାହି
କି କରହ ଏ ସଖି ଆଓଲ କାହି ।
ହମାରି ବଚନ କଛୁ କର ଅବଧାନ
ତୁହୁ ଯଦି କହସି ସୋ ମାନିନି ଠାମ ।୨
ସୁନି ଉହେ ସୋ ଧନି ନାଗରି ପାସ
ବିଦ୍ୟାପତି କହ ପୂରଲ ଆସ ।

---

ଅର୍ଥ—ରାଇଙ୍କର ଏଭଳି ବାର୍ତ୍ତାକୁ ଶୁଣି, ସଖୀ ନାଥ (ପ୍ରେମିକ)ଙ୍କ ନିକଟକୁ ଗମନ କଲା । ସେହି ସଖୀ ଦୂରରୁ ନାଗରଙ୍କୁ ଦେଖି, ଅନ୍ୟ ଆଡ଼କୁ ମୁହଁ ଫୁଲ ତୋଳିବାକୁ ଲାଗିଲା ଓ ମଝି ମଝିରେ ମୁହଁ ବୁଲାଇ ନାଗରଙ୍କୁ ଲକ୍ଷ୍ୟ କରୁଥିଲା ।୧। ଏ ବିଷୟକୁ ଲକ୍ଷ୍ୟ କରି ନାଗର ସେହି ଆଡକୁ (ଯେଉଁଠାରେ ସଖୀ ଫୁଲ ତୋଳୁଥିଲା) ଆସି ପଚାରିଲେ, ହେ ସଖି ! ଏଠାକୁ ଆସିଲୁ କାହିଁକି ? କଅଣ କରୁଛୁ ? ମୋର କିଛି କଥା

ଶୁଣ, ତୁ ଯଦି ଥରେ ସେହି ମାନିନୀ ପାଖକୁ ଯାଇ ମୋ କଥା କହନ୍ତୁ ? (ଅର୍ଥାତ୍ ମୋ ପକ୍ଷରେ ତୁ ସେହି ମାନିନୀଙ୍କୁ ଅନୁନୟ କରି କହିବାକୁ ଗଲ) ।୨। ଏ କଥା ସବୁ ଶୁଣି ସେହି ସଖୀ, ନାଗରୀ ପାଖକୁ ଯାଇ କହିଲା ବିଦ୍ୟାପତି କହନ୍ତି—ଏଥର ଆଶା ପୂର୍ଣ୍ଣ ହେଲା ।

( ୮ )

ଏ ଧନି ମାନିନୀ କଠିନ ପରାନ
ଏତହୁଁ ବିପଦେ ତୁହୁ ନା କହସି ବାନ ।
ଐସନ ଲହ ଇହ ପ୍ରେମକ ରୀତ
ଅବଲେ ମିଲନ ହୋୟ ସମୁଚିତ ।୧।

ତୋହାରି ବିରହେ ଜବ ତେଜବ ପରାନ
ତବ ତୁହୁ କାସନେ ସାଧବି ମାନ ।
କୋ କହେ କୋମଲ ଅନ୍ତର ତୋୟ
ତୋ ସମ କଠିନ ହୃଦୟ ନାହି ହୋୟ ।୨।

ଅବ ଯଦି ନା ମିଲହ ମାଧବ ସାଥ
ବିଦ୍ୟାପତି ତବ ନା କହବ ବାତ ।

---

ଅର୍ଥ—(୨) ଏତେ ବିପଦରେ ମଧ୍ୟ ତୁ କଥା କହୁନାହୁଁ ।

(୩) ଲହ = ନେ, ଗ୍ରହଣକର; ପ୍ରେମକରୀତି = ପ୍ରେମରରୀତି ।

(୪) ଅବକେ = ଏବେ, ଏଣିକି, ଏହିକ୍ଷଣି ।

(୫) ଯବ = ଯେବେ, ତେଜବ = ତେଜିବ, ଛାଡ଼ିବ ।

(୬) କାସନେ = କାହା ସଙ୍ଗରେ । ସାଧବି = ସାଧିବୁ ।

(୭) ତୋତେ କୋମଳ ହୃଦୟା କିଏ ସେ କହେ ? ।

(୮) ତୁ = ତୋ

(୯-୧୦) ବର୍ତ୍ତମାନ ଯଦି ମାଧବ ସଙ୍ଗରେ ମିଳିତା ନ ହେଉ, ତେବେ ବିଦ୍ୟାପତି ତୋତେ କେବେହେଁ କଥା କହିବେ ନାହିଁ ।

( ୯ )

ହରି ପରସଙ୍ଗ ନା କର ମଝୁ ଆଗେ
ହାମ ନହୁ ନାଗରି ମାଧବ ଲାଗେ ।
ଯାକର ମରମେ ବୈଠେ ବର-ନାରୀ
ତା ସନେ ପିରୀତି ହବଏ ଦୁଇ-ଗୁଣ ।୧

ପହିଲହିଁ ନା ବୁଝଲ ଏତ ସବ ବୋଲ
ରୂପ ନେହାରି ପଡ଼ି ଗେଲୁଁ ଭୋଲ ।
ଆନ ଭାବଇତେ ବିଧି ଆନ ଫଲ ଦେଲ
ହାର ଭରମେ ଭୁଜଙ୍ଗମ ଭେଲ ।୨।

ଏ ସଖି ଏ ସଖି ଜବ ରହୁ ଜୀବ
ହରି ଦେଶକେ ଗୃହିଁ ପାନି ନହି ପୀବ ।
ହାମ ଯଦି ଜାନତୁ କାନୁକ ରୀତ
ତବ କଏଲୁ ତା ସନେ ବାଁଧଏଲୁ ଚିତ ।୩।

ହରିଣୀ ଜାନଏଲୁ ଭାଲ କୁଟୁମ୍ବ-ବିବାଧ
ତବହୁ ବ୍ୟାଧକ ଗୀତ ସୁନତେ କରୁ ସାଧ ।
ଭନଇ ବିଦ୍ୟାପତି ସୁନ ବରନାରି
ପାନି ପିଏଲୁ କଏଲୁ ଜାତି ବିଚାରି ।୪।

---

ଅର୍ଥ— ମୋ ସମ୍ମୁଖରେ ହରିଙ୍କ ବିଷୟରେ କଥାବାର୍ତ୍ତା କର ନାହିଁ । ମୁଁ ମାଧବଙ୍କ ପାଇଁ ନାଗରୀ ହୋଇନାହିଁ । ତାଙ୍କ ହୃଦୟରେ ଯେଉଁ ସୁନ୍ଦରୀ ବସିଯାଏ, (ଅର୍ଥାତ୍ ସେ ଯେଉଁ ସୁନ୍ଦରୀ ପ୍ରତି ଅନୁରାଗୀ ହୁଅନ୍ତି) ତା ସହିତ ଦୁଇଗୁଣ ଧନ ମାନ ପ୍ରୀତି କରନ୍ତି ।୧। ଏହି ସବୁ ବିଷୟ ମୁଁ ପ୍ରଥମରୁ ବୁଝିଲି ନାହିଁ, ତାଙ୍କ ରୂପକୁ ଦେଖି ଭୋଳ ହୋଇ-ପଡ଼ିଲି । ଭାବିଥିଲି ଅନ୍ୟ ପ୍ରକାରରେ ଓ ବିଧାତା ଫଳ ଦେଲା ଅନ୍ୟ ପ୍ରକାରରେ । ହାରର ଭ୍ରାନ୍ତିରେ ଭୁଜଙ୍ଗମକୁ ପାଇଲି ।୨। ହେ ସଖି ! ଜୀବନ ଥିବାଯାଏ, ହରିଥିବା ଦେଶକୁ ମଧ୍ୟ ଗୃହିଁ ପାଣି ପିଇବି ନାହିଁ । ମୁଁ ଯଦି କାହ୍ନୁଙ୍କ ରୀତି ଜାଣିଥାଆନ୍ତି, ତେବେ କଣ ତା' ଠାରେ ଚିତ୍ତକୁ

ବାନ୍ଧି ଥାଆନ୍ତି ? ।୩। ଦକ୍ଷିଣୀ ଭଲ ଭାବରେ ସ୍ୱଜନ-ନିଗ୍ରହ କଥା ଜାଣେ, ତଥାପି ବ୍ୟାଧର ଗୀତ ଶୁଣିବାକୁ ଆଗ୍ରହ ପ୍ରକାଶ କରେ । ବିଦ୍ୟାପତି କହୁଛନ୍ତି—ହେ ସୁନ୍ଦରି ! ଶୁଣ, ପାଣି ପିଇ ପାର, ଜାତି ବିଚାର କଅଣ କରୁଛୁ ।

( ୧୦ )

ଅବନତ-ବୟନୀ ଧରଣି ନଖେ ଲେଖି
ଯେ କହେ ସ୍ୟାମ ନାମ ତାହେ ନାହି ପେଖି ।
ଅରୁନ-ବସନ ପରି ବିଗଳିତ କେସ
ଆଭରନ ତେଜଲି ଝାଁପଲି ବେସ ।୧।

ନୀରସ ଅରୁନ କମଲ-ବର ବୟନୀ
ନୟାନକ ଲୋରେ ବହି ପଓତ ଧରଣୀ ।
ଐସନ ସମୟେ ଅଓଲ ବନଦେବୀ
କହଯେ ଚଲୟେ ଧନ ଭାନୁକ ସେବୀ ।୨।
ଅବନତ-ବୟନୀ ଉତର ନାହି ଦେଲ
ବିଦ୍ୟାପତି କହ ସୋ ଚଲି ଗେଲ ।

---

ଅର୍ଥ—ଅବନତ-ବଦନା (ଶ୍ରୀରାଧା) ନଖ ସାହାଯ୍ୟରେ ଭୂତଳରେ ଲେଖୁଥାଏ, ଯେ ଶ୍ୟାମଙ୍କ ନାମ ମଧ୍ୟ ଉଚ୍ଚାରଣ କରେ ତା' ଆଡ଼କୁ ଅନାଏ ନାହିଁ, ଅରୁଣବସନ ପିନ୍ଧି, କେଶକୁ ଆଲୁଳାୟିତ କରି, ଅଳଙ୍କାର ପରିତ୍ୟାଗ କଲା ଓ ବେଶଭୂଷାକୁ ଢ଼ାଙ୍କି ରଖିଲା ।୧। ଅରୁଣ ନୀରସ (ନିଷ୍ପ୍ରଭ) ହେଲେ କମଳଶ୍ରେଷ୍ଠ ଯେଉଁଳି ଅବସ୍ଥାକୁ ପ୍ରାପ୍ତ ହୁଏ, ସୁନ୍ଦରୀର ମୁଖ ସେହିପରି ହୋଇଛି । ଅର୍ଥାତ୍ ସେ ମ୍ଳାନ-ମୁଖୀ, ନୟନର ଅଶ୍ରୁଧାରାରେ ପୃଥିବୀ ବୋହି ଯାଉଛି, ଏହିପରି ସମୟରେ ବନଦେବୀ ଆସି କହିଲେ—ହେ ସୁନ୍ଦରି ! ଚାଲ, ସୂର୍ଯ୍ୟ-ପୂଜା କରିବା ।୨। ଅବନତ ମୁଖୀ ଉତ୍ତର ଦେଲାନାହିଁ, ବିଦ୍ୟାପତି କହନ୍ତି—ଯେ ସେ ଚାଲିଗଲା । (ସୂର୍ଯ୍ୟ ଓ ଶିବାଦି ଦେବତାଙ୍କ ପୂଜା ଛଳରେ ବନ ମଧ୍ୟରେ ଶ୍ରୀରାଧା—କୃଷ୍ଣଙ୍କ ମିଳନ ହେଉଥିବା ବିଷୟ ଅନ୍ୟ ପଦାବଳୀରେ ବର୍ଣ୍ଣିତ ହୋଇଛି )

( ୧୧ )

କି ଲାଗି ବଦନ ଝାଁପସି ସୁନ୍ଦରି
ହରଲ ଚେତନ ମୋର
ପୁରୁଷ ବଧେର ଭୟ ନ କରହ
ଏ ବଡ଼ ସାହସ ତୋର ।୧।

ମାନିନି ! ଆକୁଳ ହୃଦୟ ମୋର
ମଦନ-ବେଦନ ସହିତେ ନା ପାରି
ଶରଣ ଲଇନୁ ତୋର ।୧।

କଏ ଗିରିବର କନୟ କଠୋର
ତା ଦେଖି ଲାଗଏ ଧନ୍ଦ ।
ହିୟାରି ଉପର ଶମ୍ଭୁ ପୂଜିତ
ବେଢ଼ିୟା ବାଳକ ଚନ୍ଦ ।୩।

ଏ କର-କମଲେ ପରସିତେ ଚାହି
ବିହି ନହେ ଯଦି ବାମା ।
ତୋହରି ଚରଣେ ଶରଣ ଲଇନୁ
ସଦୟ ହଇବେ ରାମା ।୪।

ଚଞ୍ଚଲ ଦେଖିୟ ଆକୁଳ ହଇନୁ
ବ୍ୟାକୁଲ ହଇଲ ଚିତ
କହେ ବିଦ୍ୟାପତି ସୁନହ ଯୁବତି
କାନୁର କରହ ହିତ ।୫।

---

ଶବ୍ଦାର୍ଥ —(୧୬)ଝାଁପସି =ଢାଙ୍କୁଛ, (୮-୧୩) ହୃଦୟ [ ବକ୍ଷ ] ଉପରେ ଗିରିବର ଅଛି, ଅଥବା କନକ-କଠୋର ( ସୁନା ଗିନା ) ଅଛି, ଅଥବା ବାଳଚନ୍ଦ୍ର ବେଷ୍ଟିତ ଶିବ ଅଛନ୍ତି, ଏ ବିଷୟରେ ମୋର ସନ୍ଦେହ ଜନ୍ମୁଛି, ଯଦି ବିଧି ବାମ ନ ହୁଏ, ତେବେ ଏହି କର-କମଳରେ ତାହା ସ୍ପର୍ଶ କରିବାକୁ ଚାହେଁ ।

( ୧୨ )

ସୁନ ସୁନ ଗୁନବନ୍ତି ରାଧେ
ପରିଚୟ ପରିହର କୌନ ଅପରାଧେ ।
ଗଗନେ ଉଦୟ କତ ତାରା
ସୁଦ୍ଧ ଆନନ୍ଦ ଅବତାରା ।୧।

ଆନ କି କହବ ବିଶେଷି
ଲଖ ଲଖମୀ-ଚୟ ଲଖି ନା ଲେଖି
ସୁନ ଧନ ମନୋ ହୃଦ ଝୁରି
ତବହିଁ ମନହି ମନ ପୂରି ।୨।

ବିଦ୍ୟାପତି କହେ ମିଲନ ଭେଲ
ସୁନଇତେ ଧନ ସବହି ଭେ ଗେଲ ।

———

ଅର୍ଥ —କେଉଁ ଅପରାଧରେ ପରିଚୟର ପରିହାର କରୁଛ ଅର୍ଥାତ୍ ଚିହ୍ନି ମଧ୍ୟ, ନ ଚିହ୍ନିଲା ଭଳି ହେଉଛୁ । ( ୩-୪ ) ଗଗନରେ କେତେ ତାରାର ଉଦୟ ନହୁଏ, କିନ୍ତୁ ଚନ୍ଦ୍ରର ଅବତାର ( ଆବିର୍ଭାବ ) ସ୍ୱତନ୍ତ୍ର ଧରଣର । ( ୫-୬ ) ଆଉ ବିଶେଷ କଣ କହିବି ? ଲକ୍ଷ ଲକ୍ଷ ଲକ୍ଷ୍ମୀଙ୍କୁ ଦେଖି ମଧ୍ୟ ମୁଁ ଗଣନାରେ (ଲେଖାରେ) କାହାରିକୁ ଆଣେ ନାହିଁ, ଅର୍ଥାତ୍ ଲକ୍ଷ୍ମୀ ସ୍ୱରୂପିଣୀ ଲକ୍ଷ ଲକ୍ଷ ରମଣୀ ମଧ୍ୟ ମୋ ଦୃଷ୍ଟିରେ ତୋ ଭଳିଆ ନୁହନ୍ତି । (୭ ୮) ଏହା ଶୁଣି ସୁନ୍ଦରୀର ମନ-ପ୍ରାଣ କାନ୍ଦିବାକୁ ଲଗିଲା, ମନେ ମନେ ସେ ଆନନ୍ଦିତା ହେଲା, ବିଦ୍ୟାପତି କହନ୍ତି— ମିଳନ ହେଲା ବୋଲି ଶୁଣି ଯାବତୀୟ ସନ୍ଦେହ ମନରେ ଉପୁଜିଲା ।

( ୧୩ )

କତ କତ ଅନୁନୟ କରୁ ବରନାହ
ଓ ଧନ ମାନନ ପାଲଟି ନା ଗୃହ ।
ବହୁବିଧ ବାନ ବିଲପୟେ କାନ
ସୁନୁଇତେ ସତଗୁନ ବାଢୟେ ମାନ ।୧।

ଗଦଗଦ ନାଗର ହେରି ଭେଲ ଭିତ
ବଚନ ନା ନିକସଏ ଚମକିତ ଚିତ ।
ପରଶିତେ ଚରନ ସାହସ ନାହି ହୋଏ
କରଯୋଡ଼ି ଠାଢ଼ି ବଦନ ପୁନ ଜୋଏ ।୨।
ବିଦ୍ୟାପତି କହେ ସୁନ ବରକାନ
କି କରବୁ ତୁହୁଁ ଅବ ଦୁର୍ଜୟ ମାନ ।

— — —

ଶବ୍ଦାର୍ଥ — (୧) ବରନାହ = ସ୍ୱାମୀଶ୍ରେଷ୍ଠ, ପ୍ରେମିକବର, କରୁ = କରେ, [୩) କାନ = କାହ୍ନୁ, ଶ୍ରୀକୃଷ୍ଣ । ବାଢ଼ଏ = ବଢେ (୬) ନିକସଏ = ବାହାରେ, (୮)ଠାଢ଼ି = ଛିଡ଼ାହୋଇ । ଜୋଏ = ସାଗ୍ରହରେ ଦେଖେ ।

( ୧୪ )

ପୀନ କଠିନ-କୁଚ କନୟା କଠୋର
ବଙ୍କିମ ନୟନେ ଚିତ ହରି ନେଲ ମୋର ।
ପରିହରି ସୁନ୍ଦରି ଦାରୁନ ମାନ
ଆକୁଲ ଭ୍ରମରେ କରଅ ମଧୁପାନ ।୧।
ଏ ଧନି ସୁନ୍ଦରି କରେ ଧରି ତୋର
ହଠ ନା କରହ ମହତ ରାଖ ମୋର ।
ପୁନ ପୁନ କତ ଯେ ବୁଝାବ ବାରବାର
ମଦନ-ବେଦନ ହାମ ସହଇ ନା ପାର ।୨।
ଭନହୁ ବିଦ୍ୟାପତି ତୁହୁ ସବ ଜାନ
ଆଶା-ଭଙ୍ଗ ଦୁଃଖ ମରନ ସମାନ ।

ଶବ୍ଦାର୍ଥ—ପୀନ = ସ୍ଥୂଳ, କନୟା କଟୋର = ସୁନାର ଗିନା ପରି ।

( ୯୫ )

ସୁନ ମାଧବ ! ରାଧା ସ୍ୱାଧୀନା ଭେଲ
ଯତନ ହି କତ ପରକାରେ ବୁଝାଯନୁ
ତବୁ ଧନି ଉତ୍ତର ନା ଦେଲା ।୧।

ତୋହାର ନାମ ସୁନଯେ ଜବ ସୁନ୍ଦରି
ଶ୍ରବନେ ମୁଦଯେ ଦୁଇ ପାନି
ତୋହାର ପିରତି ଜୋ ନବ ନବ ମାନଇ
ସେ ଅବ ନା ସୁନଯେ ବାଣୀ ।୨।

କୋହାର କେଶ, କୁସୁମ, ତୃଣ, ତାମ୍ବୂଲ
ଧରଲଇ ରାଇକ ଆଗେ
କୋପେ କମଲମୁଖୀ ପାଲଟି ନା ହେରଇ
ବୈଠଲି ବିମୁଖ ବିରାଗେ ।୩।

ହେନ ବୁଝି କୁଲିସ-ସାର ତସୁ ଅନ୍ତର
କୈସେ ମିଟାୟବ ମାନ
ବିଦ୍ୟାପତି ବଚନ ଅବ ସମୁଚିତ
ଆପେ ସିଧାରହ କାନ ।୪।

---

ଅର୍ଥ—ହେ ମାଧବ ! ଶୁଣ, ରାଧା ଏବେ ସ୍ୱାଧୀନା ହୋଇ ଗଲେଣି, କେତେ ଯତ୍ନରେ ଓ କେତେ ପ୍ରକାରେ ମୁଁ ତାଙ୍କ ବୁଝାଇଲି, ତଥାପି ସୁନ୍ଦରୀ ଉତ୍ତର ମଧ୍ୟ ଦେଲେ ନାହିଁ ।୧। ତୁମର ନାମ ଶୁଣିବା ମାତ୍ରକେ ସୁନ୍ଦରୀ ବେନି ହସ୍ତକୁ କର୍ଣ୍ଣରେ ଦେଉଛନ୍ତି, ଯେ ତୁମର ପ୍ରୀତିକୁ ନିତ୍ୟନୂତନ ନୂତନ ରୂପରେ ଗ୍ରହଣ କରୁଥିଲା । ବର୍ତ୍ତମାନ ସେହି ସୁନ୍ଦରୀ ତୁମ ବିଷୟକ ବଚନ ମଧ୍ୟ ଶୁଣୁନାହିଁ ।୨। ତୁମର କେଶ, କୁସୁମ, ତୃଣ ତାମ୍ବୁଲ ତାଙ୍କ ଆଗରେ ଥୋଇଲି କିନ୍ତୁ ସେହି କମଲମୁଖୀ ସେହି ବସ୍ତୁମାନଙ୍କୁ ଓଲଟି ଅନାଇଲା ମଧ୍ୟ ନାହିଁ, କେବଳ ବିରାଗରେ ବିମୁଖହୋଇ ବସି ରହିଲା । (ଉପରୋକ୍ତ ବସ୍ତୁ ଚତୁଷ୍ଟୟ ପଠାଇ ଶ୍ରୀକୃଷ୍ଣ ସୂଚନା ଦେଇଥିଲେ ଯେ

"ଅପରାଧ କରିଛି,ସେଥିପାଇଁ କେଶ ମୁଣ୍ଡନାର୍ଥ ମୁଁ ପ୍ରସ୍ତୁତ ଅଛି, ତେଣୁ କ୍ଷମା ଦେଇ, ଅନୁରାଗରେ ପ୍ରେରିତ କୁସୁମକୁ ଗ୍ରହଣ କର । ଦଶନ (ଦାନ୍ତ)ରେ ତୃଣ ଧାରଣ ପୂର୍ବକ କହୁଛି--ଏପରି ଅପରାଧ ଆଉ କଦାପି କରିବନାହିଁ । ମୋ ପ୍ରଣୟ ତଥା ତୁମ କ୍ଷମାର ନିଦର୍ଶନ ସ୍ୱରୂପ ଏହି ତାମ୍ବୁଳ ଗ୍ରହଣ କର) ।୩। କ୍ଷମା ବୁଝିବାରେ ତା ହୃଦୟ ବଜ୍ରସାର ତୁଲ୍ୟ କଠୋର, ମାନକୁ ମେଣ୍ଟାଇବ କେମିତି ? ବିଦ୍ୟାପତି ଏବେ ସମୁଚିତ ବଚନ କହୁଛନ୍ତି, କାହ୍ନୁ ସ୍ୱୟଂ ତାଙ୍କ (ରାଇଙ୍କ) ପାଖକୁ ଯାଆନ୍ତୁ ।୪।

( ୧୭ )

ସଖି ହେ ! ବୂଝିଲ କାହ୍ନୁ ଗୋଆର
ପିତରକ ଝାଁଡ଼ କାଜ ଦହୁ କଓନ ଲହ
ଉପରକ ଚକମକ ସାର ।୧।
ହମ ତୋ କଏଲ ମତ ଗେଲହ୍ନି ହୋଏତ
ଭଲ ହମ ଛଲା ସୁପୁରୁଖ ଜାନେ ।
ତୋହର ବଚନ ସଖି କଏଲ ଆଖି
ଦେଖି ଅମିଯ୍-ଭରମ ବିଷ ପାନେ ।୨।
ପସୁକ ସଙ୍ଗ ହୁନ ଜନମ ଗମାଓଲ
ସେ କ ବୁଝଥି ରତି ରଙ୍ଗ ।
ମଧୁ-ଜାମିନି ମୋର ଆଜ ବିଫଲ ଗେଲ
ଗୋପ ଗମାରକ ସଙ୍ଗ ।୩।
ତୋହର ବଚନ କୂପ ଧସି ଜାଏବ
ତେଁ ହମେ ଗେଲହୁ ଅବାଟ ।
ଚନ୍ଦନ ଭରମ ସିମର ଆଲିଂଗଲ
ସାଲ ରହଲ ହିୟ କାଁଟ ।୪।
ଭନଇ ବିଦ୍ୟାପତି ହରି ବହୁ ବଲ୍ଲଭ
କଏଲ ବହୁତ ଅପମାନ ।
ରାଜା ସିବସିଂହ ରୂପନରାୟନ
ଲଖିମା ପତି ରସ ଜାନ ।୫।

---

ଅର୍ଥ—ହେ ସଖି ! ମୁଁ ବୁଝିଲି,କାହ୍ନୁ ପୂର୍ଣ୍ଣରୂପେ ଗଉଣ୍ଡ,(ଏଠାରେ ଗଉଣ୍ଡ ଶବ୍ଦ ଅଳ୍ପ-ବୁଦ୍ଧି ର ଦ୍ୟୋତକ) ପିତ୍ତଳର ଖଣ୍ଡ କେଉଁ କାମର, ଚର୍ମ୍ମରେ କେବଳ ବାହ୍ୟ ଚକମକ ରହେ ।୧। ମୁଁ ତ ମନରେ ଭାବିଥିଲି ଯେ, ତାଙ୍କ ପାଖକୁ ଗଲେ ଭଲ ହେବ, କାରଣ ମୁଁ ତାଙ୍କୁ ସୁପୁରୁଷ ବୋଲି ମଣୁଥିଲି, ହେ ସଖି ! ତୋ କଥାକୁ ମୁଁ ବିନା ବିଚାରରେ ସ୍ୱୀକାର କରିନେଲି, କିନ୍ତୁ ତାହା ଅମୃତ ଭ୍ରମରେ ବିଷ-ପାନ ସଦୃଶ ହେଲା ।୨। ଯେଉଁ ଲୋକ ପଶୁ ସଙ୍ଗତ ସମସ୍ତ ଜୀବନ ଯାପନ କରିଛି,ସେ କାମ-କ୍ରୀଡ଼ାର କଥା କଣ ଜାଣିବ । ଆଜ ମୂର୍ଖ ଗ୍ରାମୀଣ ସଙ୍ଗ ମୋର ବସନ୍ତରାତ୍ରି ବ୍ୟର୍ଥ ହେଲା ।୩। କେବଳ ତୋହର କଥାରେ ମୁଁ କୂପରେ ପଶିବା ପାଇଁ ଅବାଟରେ ଜାଉଥିଲି, ମୁଁ ଚନ୍ଦନବୃକ୍ଷ ଭ୍ରମରେ ସିମୁଳି ଗଛକୁ ଆଲିଙ୍ଗନ କଲି, ସେ ହୃଦୟରେ କଣ୍ଟକ ପରି କଷ୍ଟ ଦେଉଅଛି ।୪। ବିଦ୍ୟାପତି କହୁଛନ୍ତି—ଶ୍ରୀକୃଷ୍ଣ ଅନେକ ରମଣୀମାନଙ୍କର ବଲ୍ଲଭ ଏଣୁ ନାୟିକାର ସେ ବଡ଼ ଅନାଦର କରିଛନ୍ତି । ଲଖିମାର ସ୍ୱାମୀ ରାଜା ଶିବସିଂହ ଏହି ରସର ମର୍ମକୁ ବୁଝନ୍ତି ।୫।

( ୧୬ )

କାଞ୍ଚନ-ଜ୍ୟୋତି କୁସୁମ-ପରକାସ
ରତନ ଫଲବେ ବଲି ବାଢ଼ାୟନୁ ଆସ ।
ତାକର ମୂଲେ ଦିନୁ ଦୁଧାକ ଧାର
ଫଲେ କଛୁ ନା ହେରିଅ ଝନଝନ ସାର ।୧।
ଜାତି ଗୋଆଲିନ ହାମ ମତି-ହୀନ
କୁ-ଜନକ ପିରିତି ମରନ ଅଧୀନ ।
ହା ହା ବିହି ମୋରେ ଏତ ଦୁଖ ଦେଲ
ଲଭକ ଲଗି ମୂଲ ଡୁବ ଗେଲ ।୨।
କବି ବିଦ୍ୟାପତି ଇହ ଅନୁମାନ
କୁକୁରକ ଲାଙ୍ଗୁଲ ନହତ ସମାନ

---

ଅର୍ଥ—ସୁବର୍ଣ୍ଣ ସଦୃଶଂ ପୁଷ୍ପଂ ଫଳଂ ରତ୍ନଂ ଭବିଷତି ।
ଆଶୟା ସେବିତୋ ବୃକ୍ଷଃପଶ୍ଚାଦ୍ଧ୍ବ ଝନ୍ଝନାୟତେ ॥

କାଞ୍ଚନ—ସଦୃଶ ଜ୍ୟୋତିର୍ମୟ କୁସୁମର ପ୍ରକାଶ ହେଲା, ରକ୍ତ ଫଳରୂପେ ଫଳିବ ବୋଲି ଆଶା ପୋଷଣ କରିଥିଲି, ଏଣୁ ସେହି ବୃକ୍ଷମୂଳରେ ଦୁଗ୍ଧର ଧାରା ଢାଳିଲି, କିନ୍ତୁ ଫଳ କିଛିମାତ୍ର ଦେଖିଲି ନାହିଁ, କେବଳ ଝଣ୍ ଝଣ୍ କରି ଝଡ଼ି ଯାଉ ହେଲା । ୧ । କୁଜନକ = ଦୁର୍ଜନର । (୮) ଲମ୍ପକ=ଲମ୍ପଟର, (୧୦) ସମାନ = ସଲକ୍ଷ ।

( ୧୮ )

ଅରୁନ ପୁରବ ଦିସା ବହଲି ସଗର ନିସା
ଗଗନ ମଗନ ଭେଲ ଚନ୍ଦା ।
ମୂନ୍ଦି ଗେଲି କୁମୁଦିନୀ ତଇଓ ତୋହର ଧନି
ମୂଦଲ ମୁଖ- ଅରବିନ୍ଦା ।୧।
ଚ଼ାଁନ୍ଦ ବଦନ କୁବଲୟ ଦୁହୁ ଲୋଚନ
ଅଧର ମଧୁରି ନିରମାନ ।
ସଗର ସରୀର କୁସୁମ ତୋହି ସିରଜଲ
କିଏ ଦହୁ ହୃଦୟ ପଖାନ । ୨ ।
ଅସ କତି କରଇ କଂକନ ନହି ପହିରଇ
ହାର ହୃଦୟ ଭେଲ ଭାର ।
ଗିରିସମ ଗରୁଅ ମାନ ନହି ମୁଁଚସି
ଅପରୁବ ତୁଅ ବେବହାର । ୩ ।
ଅବଗୁନ ପରହରି ହେରଇ ହରଖି ଧନି
ମାନକ ଅବଧି ବିହାନ ।
ରାଜା ସିବସିଂହ ରୂପ ନରାୟନ
କବି ବିଦ୍ୟାପତି ଭାନ । ୪ ।

---

ଅର୍ଥ—ପୂର୍ବରେ ରକ୍ତିମା ଦେଖାଗଲାଣି । ରାତି ପୂର୍ଣ୍ଣଭାବେ ଅପଗତା ଓ ଚନ୍ଦ୍ରମା ଗଗନ ମଣ୍ଡଳରେ ଅସ୍ତମିତ ହେଲେଣି । କୁମୁଦିନୀ ମୁଦିତ ହେଲାଣି । ହେ ସୁନ୍ଦରି ! ତଥାପି ତୋ ମୁଖ-କୋମଳ ଏତେ ବେଳ ପର୍ଯ୍ୟନ୍ତ ବିକସିତ ହୋଇନାହିଁ, (ମାନ-ତ୍ୟାଗ କରିନାହୁଁ) । ୧ ।

ବିଧାତା ଯଦି ଚନ୍ଦ୍ରଦ୍ୱାରା ତୁମ ମୁଖ, କମଳଦ୍ୱାରା ତୁମ ନେତ୍ର, ମଧୂଲୀପୁଷ୍ପ ଦ୍ୱାରା ତୁମ ଓଷ୍ଠ । ଏବଂ ଅନ୍ୟସମସ୍ତ ପୁଷ୍ପଦ୍ୱାରା ଶରୀରକୁ ନିର୍ମାଣ କଲା, ତେବେ ତୁମ ହୃଦୟ କାହିଁକି ପଥରଦ୍ୱାରା ନିର୍ମାଣ କଲା ? । ୨ । ଏପରି କାହିଁକି କରୁଛ, ଯେ କଙ୍କଣ ଧାରଣ କରୁନାହିଁ ଓ ହାରମଧ୍ୟ ଭାରି ଲାଗୁଛି, କିନ୍ତୁ ପର୍ବତ ତୁଲ୍ୟ ଭାରି ମାନକୁ ବହନ କରି ଚାଲୁଛ । ଏଣୁ ତୁମ ବ୍ୟବହାର ମଧ୍ୟ ଅପୂର୍ବ ପ୍ରତୀତ ହେଉଛି । ୩ । ହେ ସୁନ୍ଦରୀ ! ଅବଗୁଣ (କ୍ରୋଧ) କୁ ପରିହାର କରି ହର୍ଷିତ ହୋଇ ମତେ ଦେଖ, କାରଣ ମାନର ଅବଧି ପ୍ରାତଃକାଳ ପର୍ଯ୍ୟନ୍ତ ହୁଏ, (ବର୍ତ୍ତମାନ ତ୍ୟାଗ କର) ଏମନ୍ତ ରାଜା ଶିବସିଂହ ରୂପନାରାୟଣ ଓ ବିଦ୍ୟାପତି କହନ୍ତି । ୪ ।

( ୧୯ )

ସୁନ୍ଦର କୁଲସୀଲ ଧନି ବର ଯୁବକ
କି କରବ ଲୋଚନ ହୀନେ ।
କି କରବ ତପ-ଜପ ଦାନ-ବ୍ରତ ଆଦିକ
ଜଦି କରୁନା ନାହିଁ ଦୀନେ । ୧ ।
ଏ ସଖି ! ବୁଝିଏ କହସି କଣ୍ଠୁବାଣୀ
ଯୌବନ ଏକ ଗୁନ ବହୁ ଦୋସ ନାସଇ
ଏକ ଦୋସେ ବହୁ ଗୁନହାନୀ । ୨ ।
ଗରଲ ସହୋଦର ଗୁରୁପତ୍ନୀହରି
ବହୁ ବଦନ ଉଗାରୀ । ‘
ବିରହି ହୁତାସନ ବାରିଜ ନାସନ
ସୀଲ ଗୁନେ ଶଶୀ ଉଜିଆରୀ । ୩ ।
ପର ସୁତେ ଅନ୍ତତ ଯତନ ନାହି ନିଜସୁତେ
କାକ ଉଚ୍ଛିଷ୍ଟ ରସ-ପାନୀ ।
ସୋ ସବ ଅବଗୁନ ଢାକଲ ଏକଲ ପିକ
ବୋଲତ ମଧୁରିମ ବାନୀ । ୪ ।
କାନୁକ-ପୀରତି କି କହବ ଏ ସଖି
ସବ ଗୁନ ମୂଳ ଅମୂଲେ ।

ବଂଶୀ ପରଶି ସପଥ ସତ ସତ
ତବହିଁ ପ୍ରତୀତ ନହି ବୋଲେ । ୫ ।
ପୁନ ପରିରମ୍ଭଣ ଚୁମ୍ବନ କୋଲେ କରି
ସଂକେତ କରି ବସେପୂ ସେ ।
ଆନ ରମଣୀ ସଂଙ୍ଗେ ସୋ ନସି ବଞ୍ଚଲ
ମୋହେ କରଇ ବିବାଦେ । ୬ ।
ଅନଲହୁ ଅଧିକ ମୋ ତନୁ ଦହଇ
ରତି ଚୀନ ଦେଖି ପ୍ରତି ଅଙ୍ଗେ ।
ବିଦ୍ୟାପତି କହ ଜଂଜ ନିକସବ
ତବହୁ ନା ମିଲ ହରି ସଙ୍ଗେ । ୭ ।

---

ଅର୍ଥ—ଉତ୍ତମ କୁଳଶୀଳ ବିଶିଷ୍ଟ ଧନୀ ଓ ରୂପବାନ୍ ଯୁବକ ଲୋଚନହୀନ ହେଲେ କରିବୁ କଅଣ ? ଯାହାର ପ୍ରତି ଯଦି କରୁଣା ନ ଥାଏ ତେବେ ତାର ଜପ, ତପ, ଦାନ ଓ ବ୍ରତ ପ୍ରଭୃତିରେ କି ପ୍ରୟୋଜନ ? ହେ, ଜାଣି-ବୁଝି କଟୂବାଣୀ କାହିଁକି କହୁଛୁ ? ଗୋଟିଏ ଗୁଣ ଯେପରି ବହୁ ଦୋଷକୁ ନଷ୍ଟ କରେ; ସେହିପରି (କଟୂବାଣୀ ସଦୃଶ) ଗୋଟିଏ ଦୋଷ ମଧ୍ୟ ଅନେକ ଗୁଣକୁ ନାଶ କରେ । ୧-୨ । ଗରଳ-ସହୋଦର (କ୍ଷୀରୋଦ ମନ୍ଥନ ସମୟରେ ଗରଳ ସଙ୍ଗରେ ଶଶୀର ଉଦ୍ଭବ ହୋଇଥିବାରୁ ସେ ଗରଳ ସହୋଦର) ଗୁରୁପତ୍ନୀହର, (ଗୁରୁ ବୃହସ୍ପତିଙ୍କ ପତ୍ନୀଙ୍କୁ ଚନ୍ଦ୍ର ହରଣ କରିଥିଲେ) ସହସ୍ର ଖୋଦ୍‌ଗାରତି,ବିରହ-ଦହନ (ବିରହ-କାଳରେ ଅଗ୍ନି ସମ ଦାହକ) ଓ ବାରିଜ-ନାଶନ (ଚନ୍ଦ୍ରୋଦୟ ପଦ୍ମର ସଙ୍କୋଚନ କରୁଥିବାରୁ ସେ ବାରିଜ-ନାଶନ) ଚନ୍ଦ୍ର କେବଳ ଶୀତ (ଆହ୍ଲାଦକତ୍ୱ) ଗୁଣ ଥିବାରୁ ସମୁଜ୍ଜ୍ୱଳ । ୩ । ପରସୂତ ପ୍ରତି ଅହିତକାରୀ, ନିଜ-ସୁତ ପ୍ରତି ଅଯତ୍ନକାରୀ, କାକର ଉଚ୍ଛିଷ୍ଟରସ ସେବୀ କୋକିଳର ଯାବତୀୟ ଦୁର୍ଗୁଣ ଥିଲେ ମଧ୍ୟ, କେବଳ ମଧୁର ବାଣୀ ଦ୍ୱାରା ତାହାର ସବୁ ଦୁର୍ଗୁଣ ଛପିଯାଏ । ୪ । ହେ ସଖି ! କାହ୍ନୁଙ୍କ ପ୍ରୀତି କଥା ଆଉ କଣ କହିବି ?

ତାର ସମସ୍ତ ଗୁଣର ମୂଳହିଁ ଅମୂଳରେ, ଅର୍ଥାତ୍ ଅପକୃଷ୍ଟ ମୂଳରେ ନିର୍ମିତ । ବଂଶୀକୁ ସ୍ପର୍ଶ କରି ଶତ ଶତ ଶପଥ କଲେହେଁ, ତା ବାଣୀରେ ବିଶ୍ୱାସ ହେଉନାହିଁ । ୫ । ମୋତେ ବାରମ୍ବାର ଆଲିଙ୍ଗନ କଲେ । କୋଳରେ ନେଇ ଚୁମ୍ବନ ଦେଲେ । ସଙ୍କେତ ଦେଇ ବିଶ୍ୱାସ ଜନ୍ମାଇଲେ । କିନ୍ତୁ ଅନ୍ୟ ରମଣୀ ସହିତ ରାତି ଯାପନ କରି ମୋତେ ନିରାଶ କଲେ । ୬ ପ୍ରତି ଅଙ୍ଗରେ ରତିଚିହ୍ନକୁ ଦେଖି ମୋ ଶରୀର ଅଗ୍ନିଦାହରୁ ଅଧିକତର ଦାହ ଅନୁଭବ କରୁଛି, ବିଦ୍ୟାପତି କହୁଛନ୍ତି—ପ୍ରାଣ ବାହାରିଗଲେ ମଧ୍ୟ ହରିଙ୍କ ସଙ୍ଗେ ଆଉ ମିଶିବୁ ନାହିଁ । ୭ ।

( ୨୦ )

ଶୁନ ଶୁନ ମାଧବ ନିରଦୟ ଦେହ
ଧିକ୍ ରହୁ ଐସନ ତୋହାରି ସନେହ ।
କାହେ କହଲି ତୁହ୍ମି ସଙ୍କେତ ବାତ
ଯାମିନୀ ବଞ୍ଚଲି ଆନକ ସାଥ ।୧।
କପଟେ ଲେହ କରି ରାଇକ ପାସ
ଆନ ରମଣୀ ସନେ କରହ ବିଲାସ ।
କୋ କହେ ରସିକ-ସେଖର ବର କାନ
ତୁହୁଁ ସମ ମୁରୁଖ ଜଗତେ ନାହିଁ ଆନ ।୨।
ମାଣିକ ତେଜି କାଚେ ଅଭିଲାଷ
ସୁଧା ସିନ୍ଧୁ ତେଜି ଖାରେ ପିୟାସ ।
ଖୀର ସିନ୍ଧୁ ତେଜି କୂପେ ବିଲାସ
ଛିୟେ ଛିୟେ ତୋହାରି ରଭସ-ମୟ ଭାସ ।୩।
ବିଦ୍ୟାପତି କବି ରମଣି ଭାନ
ରାଇ ନା ହେରବ ତୋହାରି ବୟାନ

— ——

ଶବ୍ଦାର୍ଥ— (୨] ସନେହ = ସ୍ନେହ, (୩)କହଲି = କହିଲ (୪) ବଞ୍ଚଲି = ଯାପିଲୁ , (୭) କୋ = କିଏ , [୧୦) ଖାର ପିୟାସ = ଖାର ପ୍ରତି- ବାଞ୍ଛା ବା ପିପାସା , (୧୨) ଛିୟେ ଛିୟେ = ଛି , ଛି, ରଭସମୟ ଭାସ =

ରହସ୍ୟ ପୂର୍ଣ୍ଣ ବାଣୀ , ରସମୟ କଥା, (୧୩) କବି ଚମ୍ପତି = କବିଶ୍ରେଷ୍ଠ
[୧୪) ହେରବ = ଦେଖିବା , ବୟାନ = ମୁଖ ।

# ମାନାନ୍ତେ ମିଳନ ଓ ପ୍ରେମ ବୈଚିତ୍ର

[ ୧ ]

ଦୂରେ ଗେଲ ମାନିନୀ ମାନ
ଅମିୟା ସରେବଚନେ ଡୁବଲ କାନ
ମାଗୟେ ତବ ପରିରମ୍ଭ
ପ୍ରେମ-ଭରେ ସୁବଦନୀ-ତନୁ ଜନୁ ସ୍ତମ୍ଭ ।୧।

ନାଗର ମଧୁରମ ଭାସ
ସୁନଇ ଗଦ ଗଦ ଅର୍ଦ୍ଧ ନିସ୍ୱାସ ।
କୋଲେ ଅଗୋରଲ ନାହ
କରଇ ସଂଙ୍କାରଣ ରସ ନିରବାହ ।୨।

ଲହୁ ଲହୁ ଚୁମ୍ବଇ ବୟାନ
ସରସ ବିରସ ହୃଦ, ସଜଳ ନୟାନ ।
ସାହସେ ଉରେ କର ଦେଲ
ମନସ୍ୱି ମନୋଭବ ତବ ନାହି ଭେଲ ।୩।

ଡୋଡ଼ଲ ଜବ ନୀବୀବନ୍ଧ
ହରି ସୁଖେ ତବ କି ମନୋଭବ ମନ୍ଦ
ତବ କହୁ ନାହକ ସୁଖ
ଭନ ବିଦ୍ୟାପତି ସୁଖ କି ଦୁଃଖ ।୪।

———

ଅର୍ଥ—ମାନିନୀର ମାନ ବିଦୂରିତ ହେଲା , କାହ୍ନୁ ସୁଧାସରୋବରରେ ବୁଡ଼ିଲେ , ତଦନନ୍ତର ଆଲିଙ୍ଗନ ଭିକ୍ଷା କଲେ , ଏଣୁ ପ୍ରେମାନନ୍ଦରେ ସୁନ୍ଦରୀର ତନୁ ସ୍ତମ୍ଭିତ ହୋଇଗଲା, ଅର୍ଥାତ୍ ସ୍ତମ୍ଭପ୍ରାୟ ନିଶ୍ଚଳ ହୋଇ ରହିଲା ।୧। ନାଗର ( ଶ୍ରୀକୃଷ୍ଣ ) ଙ୍କ ମଧୁର-ବାଣୀ ଶ୍ରବଣ କରି ସୁନ୍ଦରୀର ଦୀର୍ଘ ନିଶ୍ୱାସ ବହୁଥାଏ , ନାଗର, ସୁନ୍ଦରୀକୁ କୋଳରେ ଆବୋରି ଧରିଲେ ଓ ସଂକୀର୍ଣ୍ଣରସ ନିର୍ବାହ କଲେ , ( ସଂକୀର୍ଣ୍ଣରସ-ନିର୍ବାହ = ମାନାନ୍ତେ ସମ୍ଭୋଗ, ମାନଶେଷହେଲେ ମଧ୍ୟ ନାରୀମାନଙ୍କ ମନ କିଛି ସମୟ ପର୍ଯ୍ୟନ୍ତ ସଂକୁଚିତ ବା ଅପ୍ରସନ୍ନ ଥାଏ , ସୁତରାଂ ସେହି ସମୟର ସମ୍ଭୋଗ ସଂକୀର୍ଣ୍ଣ ବା ସଂକୁଚିତରୂପରେ ନିର୍ବାହିତ ହୋଇଥାଏ ] ସେ ଧୀରେ ଧୀରେ ( ଲଘୁ ଲଘୁ ) ଚୁମ୍ବନ ଦେଲେ । ସୁନ୍ଦରୀ ଅତିଶୟ ଅଭିମାନ କରିଥିଲା ବୋଲି ମାନଭଞ୍ଜନାନନ୍ତର ସଂପୂର୍ଣ୍ଣ ମାନସିକ ପ୍ରସନ୍ନତା ଲଭି ପାରି ନାହିଁ, ସୁତରାଂ ତାର ହୃଦୟ ସରସ ହୋଇ ସୁଦ୍ଧା ବିରସ ଓ ନୟନ ସଜଳ । ନାଗର ସାହସର ସହିତ ତାର ବକ୍ଷ ସ୍ଥଳରେ କରାର୍ପଣ କଲେ । ତଥାପି ମନରେ ମନୋଭବର ( କାମର ) ଉଦ୍ରେକ ହେଲା ନାହିଁ, ନୀବୀବନ୍ଧ ଉନ୍ମୋଚନ କଲା ପରେ ହରିଙ୍କର ସୁଖ ହେତୁ ଅଳ୍ପ ଅଳ୍ପ କାମୋଦ୍ରେକ ହେବାକୁ ଲାଗିଲା,ବିଦ୍ୟାପତି କହୁଛନ୍ତି— ଏ ସୁଖ କି ଦୁଃଖ କିଛି କହି ହେଉନାହିଁ ।

( ୨ )

ଅପରୂପ ରାଧା ମାଧବ ସଙ୍ଗ
ଦୁର୍ଜ୍ଜୟ ମାନିନୀ ମାନ ଭେଲ ଭଙ୍ଗ ।
ଚୁମ୍ବଇ ମାଧବ ରାଇ ବୟାନ
ହେରଇ ମୁଖ-ସସୀ ସଜଲ ନୟାନ ।୧।
ସଖୀଗନ ଆନନ୍ଦେ ନିମଗନ ଭେଲ
ଦୁହୁଜନ ମନ-ମାହା ମନସିଜ ଗେଲ ।
ଦୁହୁଁ ଜନ ଆକୁଲ ଦୁହୁଁ କରୁ କୋର
ଦୁହୁଁ ଦରସନେ ବିଦ୍ୟାପତି ଭୋର ।୨।

ଶବ୍ଦାର୍ଥ—ଭେଲ = ହେଲା , [୪] ନୟାନ = ନୟନ , [୬] ଦୁହିଁଙ୍କ ମନରେ କାମୋଦ୍ରେକ ହେଲା , [୭-୮]ଉଭୟେ ଉଭୟଙ୍କ କୋଳ ଅର୍ଥାତ୍ ଆଲିଙ୍ଗନ କଲେ , ଉଭୟଙ୍କ ଦର୍ଶନରେ ବିଦ୍ୟାପତି ଭୋଳ ହେଲେ ।

( ୩ )

ଏ ସଖି ଏ ସଖି କି କହବ ହାମ
ପିୟା ମୋର ବିଦଗଧ, ବିହି ମୋରେ ବାମ ।
ନବ ଦୁଃଖ ଆୟଲ ମଝୁ ଲାଗି
ଦାରୁଣ ସାସ ରହଲ ତହିଁ ଜାଗି । ୧ ।
ଘରେ ଘୋର ଅନ୍ଧକାର କି କହବ ସଖି
ପାସେ ଲଗଲ ପିୟା କଛୁଇ ନା ଦେଖି ।
ଚିତ ମୋର ଧସ ଧସ କହତେ ନା ପାଇ
ଏ ବଡ଼ ମନେର ଦୁଖ ରହୁ ଚିର ଥାଇ । ୨ ।
ବିଦ୍ୟାପତି କହେ ତହୁଁ ଆଗେୟାନ
ପିୟା ହିୟା କର କାହେ ନା ଫେରି କୟାନ ।

---

ଶବ୍ଦାର୍ଥ—(୨) ବିଦଗଧ = ବିଦଗ୍ଧ, ସୁରସିକ, ପିୟା = ପ୍ରିୟତମ, ନାଗର ( ୩ ) ମଝୁଲଗି = ମୋ ପାଇଁ, ଆୟଲ = ଆସିଲା; (୪) ସାସ = ଶାଶୁ (୬) ନାଗର ମୋ ପାଖକୁ ଲାଗି ରହି ଥିଲେ । (୭) ମନ ମୋର ଧଇଁ ସଇଁ ହେଲା, (୮] ଚିରଥାଇ = ଚିରସ୍ଥାୟୀ, (୯-୧୦] ବିଦ୍ୟାପତି କହୁଛନ୍ତି—ତୁ ଓଲୁଣୀ ଟାଏ, ମୁହିଁ ଲେଉଟାଇ ନାଗରଙ୍କୁ ଛାତିରେ ନ ଧରିଲୁ କାହିଁକି ? ।

[ ୪ )

କହ କହ ସୁନ୍ଦରି ରଜନୀ-ବିଲାସ
କୈସେ ନାହ ପୂରଲ ତୁୟା ଆସ ।
କତହୁ ଯତନେ ବଧି କର ଅନୁମାନ
ନାଗର ନାଗରୀ କୟଲ ନିରମାନ । ୧୦ ।

ଅଖିଲ ଭୁବନ ମାହା ତୁହୁଁ ବର ନାରୀ
ସୁପୁରୁଷ ନାହ ତୋହେ ମିଲଲ ମुରାରୀ ।
ପିଆକ ପୀରତି ହାମ କହଇ ନ ପାର
ଲଖ ବଦନ ବିହି ନା ଦଲ ହାମାର । ୨ ।
ଆପନକ ଗଜମୋତି-ହାର ଉତାରି
ଯତନେ ପରାଓଲ କଣ୍ଠେ ହମାରି ।
କରେ ଧରି ପିଆ ବୈସାୟଲ କୋର
ସୁଗନ୍ଧ ଚନ୍ଦନ ଅଙ୍ଗେ ଲେପଲ ମୋର । ୩ ।
ଫୁୟଲ କବରୀ ବାନ୍ଧୟେ ଅନୁପାମ
ତାହେ ବେଢ଼ି ଦେୟଲ ଚମ୍ପକ ଦାମ ।
ମଧୁର ମଧୁର ହସେ ହେରଇ କାନ
ଆନନ୍ଦ-ଜଲେ ପରିପୂରିଲ ନୟାନ । ୪ ।
ଭନୟେ ବିଦ୍ୟାପତି ଭାବ-ତରଙ୍ଗ
ଏବେ କହବ ସୁନ ସଖି ମୋ ପରସଙ୍ଗ

———

ଅର୍ଥ—( ସଖିର ପ୍ରଶ୍ନ ) "କହ ସୁନ୍ଦରି କହ ! ନାଗର ତୋର ଆଶା ପୂର୍ଣ୍ଣ କଲା କେମିତି ? ବିଧାତା କେତେ ଯତ୍ନରେ କଳ୍ପନା କରି, ନାଗର-ନାଗରୀର ନିର୍ମାଣ କାର୍ଯ୍ୟ ସମ୍ପାଦନ କରିଛି । ୨ । ତୁ ଅଖିଳ ଭୁବନ ମଧ୍ୟରେ ନାରୀ ଶ୍ରେଷ୍ଠା, [ ଯେ ହେତୁ ) କାହ୍ନୁ ସଦୃଶ ସୁପୁରୁଷ ତୋତେ ନାଥ ରୂପରେ ମିଳିଛନ୍ତି ।

(ଶ୍ରୀମତୀଙ୍କ ଉତ୍ତର) "ପ୍ରିୟତମଙ୍କ ପ୍ରୀତିର କଥା ମୁଁ କହି ପାରିବି ନାହିଁ । ବିଧାତା ମୋତେ ଲକ୍ଷ୍ୟ ମୁଖ ଦେଇ ନାହାନ୍ତି (ଗୋଟିଏ ମୁଖରେ କହିବି କିମିତି ?) ସେ ଆପଣାର ଗଜମୁକ୍ତାହାର ଖୋଲି ସଯତ୍ନରେ ମୋ କଣ୍ଠରେ ପିନ୍ଧାଇଲେ । ପୁନଃ ହସ୍ତରେ ଧରି କୋଳରେ ବସାଇଲେ, ସୁଗନ୍ଧ ଚନ୍ଦନ ମୋ ଅଙ୍ଗରେ ଲେପନ କଲେ, ମୋର ଉନ୍ମୁକ୍ତ କବରୀକୁ ଅନୁପମ ଭାବରେ ବାନ୍ଧିଦେଲେ,ପୁଣି ଚମ୍ପକଦାମରେ ତାକୁ ମଣ୍ଡିତ କଲେ । କାହ୍ନୁ , ସୁମଧୁର ଦୃଷ୍ଟିକୁ ମୋ ଉପରେ ପକାଇଲା ବେଳେ ମୋ ନୟନ ଆନନ୍ଦାଶ୍ରୁରେ ପୂର୍ଣ୍ଣ ହୋଇ ଉଠୁଥିଲା ।" ବିଦ୍ୟାପତି କହନ୍ତି—ସଖି ଏବେ ମୁଁ ଭାବତରଙ୍ଗ ପ୍ରସଙ୍ଗ କହିବି , ଶୁଣ ।

( ୫ )

ଦୁହୁଁ ରସମୟ ତନୁ ଗୁଣେ ବାନ୍ଧୁ ଓର
ଲାଗଲି ଦୁହୁଁକ ନା ଭାଙ୍ଗର ଜୋର ।
କୋ ନାହିଁ କୟଲି କଁଡନ୍ତୁ ପରକାର
ଦୁହୁ ଜନ ଭେଦ କରଇ ନାହୁ ପାର । ୧ ।

ଜୋ ଖଲ ସକଲ ମହୀତଲ ଗେହ
କ୍ଷୀର ନୀର ସମ ନା ହେରଲୁ ଲେହ ।
ଜବ କୋଇ ବେରି ଅନଲ ମୁଖ ଆନ
କ୍ଷୀର ଦଗ୍‌ଧ ଦେଇ ନିଷାରତି ପାନ । ୨ ।

ତବହୁଁ କ୍ଷୀର ଉମଡ଼ି ପଡ଼ୁହିଁ ତାପେ
ବିରହ ବିୟୋଗ ଆଗ ଦେଇ ଝାଁପେ ।
ଜବ କୋଇ ପାନି ଆନି ତାହେ ଦେଲ
ବିରହ ବିୟୋଗ ତବହୁଁ ଦୂର ଗେଲ । ୩ ।

ଭନଇ ବିଦ୍ୟାପତି ଇତନି ସୁରେହ
ରାଧା-ମାଧବ ଐସନ ଲେହ ।

---

ଅର୍ଥ—ଉଭୟେ ରସମୟ-ତନୁ ବିଶିଷ୍ଟ ଓ ଅସୀମ ଗୁଣ-ଯୁକ୍ତ । ଉଭୟଙ୍କର ସମ୍ମିଳନରେ ବିଚ୍ଛେଦ ନାହିଁ । କେତେ ଲୋକ କେତେ ପ୍ରକାରର ଚେଷ୍ଟା ନ କରିଛନ୍ତି ? କିନ୍ତୁ କେହି ହେଲେ ଏ ଦୁହିଁଙ୍କ ମଧ୍ୟରେ ଭେଦ ଜନ୍ମାଇ ପାରିନାହିଁ । ୧ । ଧରାତଳରେ ଯେଉଁ ଖଳ ଲୋକମାନେ ଗୃହ କରି ବାସ କରିଛନ୍ତି, ସେମାନଙ୍କ ମଧ୍ୟରେ କ୍ଷୀର-ନୀର ସଦୃଶ ପାରସ୍ପରିକ ସ୍ନେହ ଦେଖିଲି ନାହିଁ । କେହି ଯଦି କେବେ ଅଗ୍ନି ମୁଖକୁ ଆଣି କ୍ଷୀରକୁ ଦଗ୍‌ଧ ଦିଏ, ତାହା ହେଲେ ଏହି କ୍ଷୀର ସନ୍ତାପିତ ହୋଇ ଉଚ୍ଛୁଳି ଉଠେ, ବିରହ-ବିଯୋଗ ପୂର୍ବରୁ ଅଗ୍ନି ମଧ୍ୟକୁ ଝାଁପି ପଡ଼େ, ଯଦି କେହି ତହିଁରେ ପାଣି ଆଣି ଢାଳିଦିଏ, ତାହାହେଲେ ବିରହ-ବିଯୋଗ ଦୂର ହୋଇଥାଏ, ( ବିରହ-ବିଯୋଗର ବ୍ୟବହାର ମାନ-ସମ୍ଭ୍ରମ,

ଆପଦ-ବିପଦ, ବନ୍ଧୁ-ବାନ୍ଧବ ପ୍ରଭୃତିର ପର୍ଯ୍ୟାୟଭୁକ୍ତ ) ବିଦ୍ୟାପତି କହନ୍ତି, ଯେ ଏଭଳି ଏକାତ୍ମ୍ୟ ହିଁ ବାସ୍ତବରେ ସ୍ନେହପଦବାଚ୍ୟ ଓ ରାଧାମାଧବଙ୍କ ପାରସ୍ପରିକ ପ୍ରଣୟ ବା ସ୍ନେହ ଏହିପରି ଅଟେ । ୪ ।

( ୭ )

ବଡ଼ଇ ଚତୁର ମୋର କାନ
ସାଧନ ବିନହି ଭାଙ୍ଗଲ ମଝୁ ମାନ ।
ଯୋଗି ବେସ ଧରି ଆଓଲ ଆଜ
କେ ଇହ ସମଝବ ଅପରୁବ କାଜ । ୧ ।

ସାସ ବଚନ ହମ ଭିଖ ଲଇ ଗେଲ
ମଝୁ ମୁଖ ହେରଇତ ଗଦଗଦ ଭେଲ ।
କହ ତବ-ମାନ-ରତନ ଦଇ ମୋୟ
ସମଝଲ ତବ ହମ ସୁକପଟ ସୋୟ । ୨ ।

ଯୋ କିଛୁ କହଲ ତବ କହଇତ ଲାଜ
କୋଇ ନ ଜାନଲ ନାଗରୀ-ରାଜ ।
ବିଦ୍ୟାପତି କହ ସୁନ୍ଦରି ରାଈ
କଏ ତୁହ ସମୁଝବ ସୋ ଚତୁରାଇ । ୩ ।

———

ଅର୍ଥ—କାହ୍ନୁ ମୋର ବଡ଼ ଚତୁର, ବିନା ଅଭ୍ୟାସରେ ସେ ମୋର ମାନଭଞ୍ଜନ କଲା. ଆଜ ଯୋଗୀବେଶ ଧରି ଆସିଲା, ଏହି ଅପରୂପ କାର୍ଯ୍ୟକୁ କିଏସେ ଅବା ବୁଝିବ ? । ୧ । ମୁଁ ଶାଶୁଙ୍କ କଥନରେ ଭିଖ ନେଇ ଗଲି, ମୋ ମୁଖ ଦେଖିଲାକ୍ଷଣି ସେ ଗଦ୍‌ଗଦ ହୋଇ କହିଲେ—"ମୋତେ ମାନରୂପକ ରତ୍ନକୁ ପ୍ରଦାନ କର ?" ଏହାପରେ ମୁଁ ବୁଝିଲି ସେ ସୁକପଟୀ ବୋଲି, ତା ପରେ ସେ ଯାହା କିଛି କହିଲେ ତାହା କହିବାକୁ ଲଜ୍ଜା ହେଉଛି । ସେ ନାଗରରାଜ ବୋଲି କେହି ଜାଣି ପାରିଲେ ନାହିଁ । ବିଦ୍ୟାପତି କହନ୍ତି—ରାଈ ସୁନ୍ଦରି । ସେ ଚତୁରତାକୁ ତୁ କଣ ବୁଝିବୁ । ୩ ।

( ୭ )

ରାଧା ମାଧବ    ରତନ ହି ମନ୍ଦିରେ
ନିବସଇ ସପୁନକ ସୁଖେ ।
ରସେ ରସେ ଦାରୁନ    ଦ୍ୱନ୍ଦ ଉପଜାଇଲ
କାନ୍ତ ଚଲଇ ତହି ରୋଖେ । ୧ ।

ନାଗରି ଅଞ୍ଚଲ    କରେ ଧରି ନାଗର
ହାସି ମିନତି କରୁ ଆଧା ।
ନାଗର ହୃଦୟ    ପାଁଚଶର ହାନଲ
ଉରଜ ଦରଶି ମନବାଧା । ୨ ।

ଦେଖ ସଖି ଝୂଠକ ମାନ
କାରନ କହୁଇ    ବୁଝଇ ନା ପାରଏ
ତବ କାହେ ରୋଷଲ କାନ । ୩ ।
ରୋଖ ସମାପି    ରହସି ପସାରଲ
ଚାପି ମଧୁତ ପାଁଚ ବାନ ।
ଅବସର ଜାନି    ମାନବତୀ ରାଧା
ବିଦ୍ୟାପତି ଇହ ଭାନ । ୪ ।

---

ଅର୍ଥ—ରାଧାମାଧବ ରତ୍ନ ମନ୍ଦିରରେ ଶଯ୍ୟା ଉପରେ ସୁଖ ପୂର୍ବକ ଉପବିଷ୍ଟ ଥିଲେ, ରସାଳାପ ଗୁହ୍ଲି ଗୁହ୍ଲି ଦାରୁଣ କଳହର ସୂତ୍ରପାତ ହେଲା, ରୋଷ ପରବଶ ହୋଇ କାନ୍ତ ବାହାର ପଡ଼ିଲେ । ୧ । ନାଗରୀ, ନାଗରର ବସନାଞ୍ଚଳକୁ ହସ୍ତରେ ଧରି ସହାସ୍ୟ ବଦନରେ ଅର୍ଦ୍ଧ-ମିନତିର ଭାବ ପ୍ରକାଶ କଲା, ସେତେବେଳେ ନାଗରଙ୍କ ହୃଦୟରେ କନ୍ଦର୍ପ ନିଜର ପଞ୍ଚଶରକୁ ନିକ୍ଷେପ କଲା, ତେଣୁ ନାଗରୀଙ୍କ ଉରଜ ଦର୍ଶନ ପୂର୍ବକ ମନରେ ବାଧା ବା ଫକ୍ଷୋଭର ଉଦ୍ରେକ ହେଲା । ୨ । ହେ ସଖି ! ଏହି ଅକାରଣ ଅଭିମାନକୁ ଦେଖ, କାହ୍ନୁ ତେତେବେଳେ ରୋଷ କାହିଁକି ପ୍ରକାଶିଲା, ଏହା ମୁଁ ବୁଝିପାରିଲି ନାହିଁ । ୩ । ସେ ରୋଷ ସମାପନ ପୂର୍ବକ

ପୁଣି ରହସ୍ୟ ପ୍ରସାରିତ ହେଲେ, ଭିତ ମଧ୍ୟରେ ପଞ୍ଚବାଣର ବିସ୍ତାର ଘଟିଲା, ମାନବତୀ ରାଧାର ସୁଯୋଗ ଜାଣି, ବିଦ୍ୟାପତି ଏହା କହିଲେ । ୪ ।

( ୮ )

କି କହବ ସଖି ଏଜୁକ ବାତ
ମାଣିକ ପଡ଼ଲ କୁବନିକ ହାତ ।
କାଚ-କାଞ୍ଚନ ନା ଜାନୟେ ମୂଲ
ଗୁଞ୍ଜା ରତନ କରଇ ସମତୁଲ । ୧ ।
ଜୋ କଛୁ କଭୁ ନାହି କଲା ରସଜାନ
ନୀର କ୍ଷୀର ଦୁହୁଁ କରଇ ସମାନ ।
ତାହା ସଙ୍ଗେ କାହାଁ ପୀରିତି ରସାଲ
ବାନର କଣ୍ଠେ କି ମୋତିମ ମାଲ । ୨ ।
ଭଣୟେ ବିଦ୍ୟାପତି ଇହ ରସ ଜାନ
ବାନର ମୁହେ କି ସୋଭୟେ ପାନ ।

———

ଶବ୍ଦାର୍ଥ—(୧) ବାତ=କଥା, (୪) ଗୁଞ୍ଜା=କାଇଞ୍ଚ, (୫) ଯେ କେବେହେଲେ ଅଣୁମାତ୍ର କଳା ରସ ଜାଣିନାହିଁ, (୮) ବାନର କଣ୍ଠରେ ମୋତିମାଳା ( ମୁକ୍ତାହାର ) କିଅଣ ଶୋଭା ପାଏ ?

( ୯ )

କି କହବ ସଖି ଅଜୁକ ରଙ୍ଗ
ସପନହି ସୂତଲ କୁପୁରୁଷ ସଙ୍ଗ ।
ବଡ଼ ସୁପୁରୁଷ ବଲି ଆଓଲ ଧାଇ
ସୂତି ରହଲ ମନ୍ଦୁ ଆଁଚରେ ଝଁପାଇ । ୧ ।
କାଁଚଲି ଖୋଲି ଆଲିଙ୍ଗନ ଦେଲ
ମୋହେ ଜଗାଏ ଆପୁ ନିନ୍ଦ ଗେଲ ।

ହେ ବିହି ହେ ବିହି ବଡ଼ ଦୁଃଖ ଦେଲ
ସେ ଦୁଃଖ, ରେ ସଖି ଅବହୁଁ ନ ଗେଲ । ୨ ।
ଭଣଏ ବିଦ୍ୟାପତି ଇହ ରସ ଧଂଦ
ଭୈଁର କି ଜାନ କୁସୁମ-ମକରନ୍ଦ ।

---

ଶବ୍ଦାର୍ଥ—(୧) ଅଜୁକ—ଅଜିର, (୨) ସୁତଲ୍ = ଶୋଇଲି (୩) **ଅଓଲ୍ହ = ଅସିଲି**, ଧାଇ = ଧାଇଁ, (୦) ଅଁଚଲହିଁ ପାଇ = ଅଞ୍ଚଳ ଅବୃତ କରି, (୫) ଖିଁଚଲ = କଞ୍ଚୁଳି, (୬) ମୋତେ ଜାଗ୍ରତ କରାଇ ସେ ଶୋଇ ପଡ଼ିଲେ ।

( ୨୦ )

ଏ ଧନି ରଂଗିନି କି କହବ ତୋୟ
ଅଜୁକ କୌତୁକ କହଲ ନ ହୋୟ ।
ଏକଲି ସୁତଲି ଛଲି କୁସୁମ ସୟାନ
ଦୋସର ମନମଥ କର-ଧନୁବାନ । ୧ ।
ନୂପୁର ରୁନୁ ଝୁନୁ ଅଓଲ କାନ
କୌତୁକ ମୁଁଦି ହମ ରହଲ ନୟାନ ।
ଅଓଲ କାହ୍ନୁ ବଇସଲ ମଝୁ ପାସ
ପାସ ମୋଡ଼ି ହମ ଲୁକାଓଲ ହାସ । ୨ ।
କୁଂତଳ କୁସୁମ ଦାମ ହରି ଲେଲ
ବରହା ଦାମ ପୁନହି ମୋହି ଦେଲ ।
ନାସା ମୋତିମ ଗୀମକ ହାର
ଜତନେ ଉତାରଲ କତ ପରକାର । ୩ ।
କଂଚୁକି ଫୁଗଇତ ପହୁ ଭେଲ ଭୋର
ଜାଗଲ ମନମଥ ବାଁଧଲ ମୋର ।
କବି ବିଦ୍ୟାପତି ଏହ ରସ ଭାନ
ତୁହୁ ରସିକା ପହୁ ରସିକ ସୁଜାନ । ୪ ।

---

ଅର୍ଥ—ଅଲୋ ସୁନ୍ଦରୀ ରଙ୍ଗିଣି ! ତୋତେ କଅଣ କହିବି ? ଅଜକାର କୌତୁକ ଯେ କହି ହେଉନାହିଁ । ଛଳନା କରି କୁସୁମ-ଶଯ୍ୟାରେ ଏକାକିନୀ ଶୋଇଥିଲି, କେବଳ ଫୁଲବାଣକୁ ହସ୍ତରେ ଧାରଣ କରି, ମଦନ ହିଁ ଦ୍ୱିତୀୟ ରୂପେ ଥିଲା । ୧ । ନୂପୁର ଝୁଣୁ ଝୁଣୁ ବଜାଇ କାହ୍ନୁ ଅସିଲେ, ମୁଁ କୌତୁକରେ ହସି, ଆଖି ବୁଜି ରହିଲି । କାହ୍ନୁ ଅସି ମୋ ପାର୍ଶ୍ୱରେ ବସିଲେ, ମୁଁ ପାର୍ଶ୍ୱ ପରିବର୍ତ୍ତନ ପୂର୍ବକ ନିଜ ହାସକୁ ଲୁଚାଇଲି ।୨। ସେ ମୋ କୁନ୍ତଳର କୁସୁମ-ଦାମକୁ ହରଣ କରି ନେଇ, ପୁଣି ମୋତେ ମୟୂର-ଚନ୍ଦ୍ରିକାର ମାଲ୍ୟ ଦେଲେ; ନାସାର ମୁକ୍ତା ( ଅର୍ଥାତ ନୋଳକ ) ଓ ଗଳାର ହାର ସଯତ୍ନରେ କେତେ ପ୍ରକାରରେ ଖୋଲି ଥୋଇଲେ ।୩। କଞ୍ଚୁଳିକୁ ଖୋଲୁ ଖୋଲୁ ମୋର ପ୍ରଭୁ ବିହ୍ୱଳ ହୋଇ ପଡ଼ିଲେ । କାମର ଉଦ୍ରେକ ହେଲା, ମୁଁ ମଧ୍ୟ ଶ୍ରୀହରିଙ୍କୁ ଅଲିଙ୍ଗନ ପାଶରେ ବାନ୍ଧିନେଲି । ରସିକ ଓ ସୁଜ୍ଞ ବିଦ୍ୟାପତି ଭଣନ୍ତି ଯେ ପ୍ରଭୁ ହେଉଛନ୍ତି ରସ ସର୍ବଜ୍ଞ, ଓ ତୁ ମଧ୍ୟ ରସବତୀ ।୪।

( ୧୧ )

ଅଛୁନୁ ହାମ ଅତି ମାନିନୀ ହୋଇ
ଭାଙ୍ଗଲି ନାଗର ନାଗରୀ ହୋଇ ।
କି କହବ ରେ ସଖି ଆଜୁକ ରଙ୍ଗ
କାହ୍ନୁ ଅଓଲ ତହିଁ ଦୋତିକ ସଙ୍ଗ । ୧ ।

ବେଣୀ ବନାୟଲ ଗୁଁଥରେ କେସେ
ନାଗର-ଶେଖର ନାଗରୀ-ବେସେ ।
ପହିରଲ ହାର ଉରଜ କରି ଉଚେ
ଚରନ ହିଁ ନେୟଲ ରଚନ ନୂପୁରେ । ୨ ।

ପହିଲହି ଚଲଇତେ ବାମପଦ ଘାତ
ନାଚତ ରତିପତି ଫୁଲଧନୁ ହାତ ।
ହେରି ହାମ ସଚକିତ ଅଦର କେଲ
ଅବନତ ହେରି କୋର ପର ନେଲ । ୩ ।

ସୋ ତନୁ ସରସ ପରସ ଜବ ଭେଲ
ମାନକ ଗରବ ରସାତଲ ଗେଲ ।
ନାସ୍ତା ପରସି ରହଲ ହାମ ଧନ୍ଧ
ବିଦ୍ୟାପତି କହେ ଭାଙ୍ଗଲ ଦ୍ୱନ୍ଦ । ୪ ।



ଶବ୍ଦାର୍ଥ—(୧) ଅଛିନୁ=ଥିଲି, (୨) ଭାଙ୍ଗଲ=ଭାଙ୍ଗିଲା । (୩) ଦୋତକ ସଙ୍ଗ=ଦୂତୀ ସଙ୍ଗରେ, (୫) ଗୃଚର=ଲୁଣ୍ଠିତ (୭-୮) ବକ୍ଷରେ କୃତ୍ରିମ ସ୍ତନ କରି ତଦୁପରି ହାର ପିନ୍ଧିଲେ । ଚରଣରେ ରତ୍ନ ନୂପୁର ପିନ୍ଧିଲେ । ( ୯-୧୦ ) ଗୃଲିଲା ବେଳେ ପ୍ରଥମେ ପ୍ରଥମେ ବାମପଦ ନିକ୍ଷେପ କରୁଥିଲେ, ରତିପତି ଯେପରି କି ଫୁଲଧନୁ ହାତରେ ଧରି ନାଚୁଥିଲା । ( ନାଗରୀ ବେଶର ବର୍ଣ୍ଣନା କରୁ କରୁ ଶ୍ରୀରାଧା ନାଗରଙ୍କ ତତ୍‌କାଳୀନ ଭାବସ୍ମରଣରେ ବିହ୍ୱଳା ହୋଇ ଏହା କହୁଲେ ) (୧୧-୧୨ ) ସେ ରୂପକୁ ଦେଖି, ମୁଁ ଚକିତ ହୋଇ ଆଦର କଲି ଓ ମୁଖକୁ ଅବନତ କରିଥିବାର ଦେଖି କୋଳକୁ ନେଲି । ( ୧୩-୧୪ ) ସେହି ତନୁର ସ୍ପର୍ଶ ଘଟିଲା କ୍ଷଣି ମାନର ଗର୍ବ ରସାତଳକୁ ଗୃଲିଗଲା । ମୁଁ ନାସିକା ସ୍ପର୍ଶ କରି ସ୍ତବ୍ଧ ହୋଇ ରହିଲି ।

( ୯୬ )

ମନ୍ଦିରେ ଅଛିନୁ ସହଚରୀ ମେଲି
ପରସଙ୍ଗେ ରଜନୀ ଅଧିକ ରଇ ଗେଲି ।
ଜବ ସଖି ଚଲଲିହୁ ଅପନ ଗେହ
ତବ ମଝୁ ନିନ୍ଦେ ଭରଲି ସବ ଦେହ । ୧ ।

ସୁତି ରହଲି ହମ କରି ଏକ ଚିତ
ଦୈବେ ବିପାକ ଭେଲି ବିପରୀତ ।
ନା ବୋଲି ସଜନି, ସୁନ ସ୍ୱପନ ସଂବାଦ
ହସଇତେ କେହ ଜନି କରେ ପରିବାଦ । ୨ ।

ବିଷାଦ ପଡ଼ିଲ ମଝୁ ହୃଦୟକ ମାଝ
ତୁରିତେ ଘୁଞ୍ଚୁଇନୁ ନୀବିକ କାଚ ।
ଏକ ପୁରୁଖ ପୁନ ଆଓ୍ୱଲ ଆଗେ
କୋପେ ଅରୁନ ଆଁଖି ଅଧରକ ରଙ୍ଗେ । ୩ ।

ସେ ଭୟେ ଚିକୁର ଚୀର ଅନେକେ ଗେଲ
କପାଲେ କାଜଲ ମୁଖେ ସିନ୍ଦୁର ଭେଲ ।
ଅତୟେ ଜରବ କେହୁ ଅପଯଶ ଗାବ
ବିଦ୍ୟାପତି କହେ ଝେକା ପତିୟାବ । ୪ ।

---

ଶବ୍ଦାର୍ଥ—(୧) ସହଚରୀ ମେଲ=ସହଚରୀ ମେଳରେ, (୨) ପରସଙ୍ଗେ=ଆଳାପ କରୁ କରୁ, (୪) ମଝୁ=ମୋର, ନିନ୍ଦେ= ନିଦରେ, (୫) ସୁତି ରହଲୁ=ଶୋଇ ରହିଲି, ( ୭-୮ ) ହେ ସଜନି ! ସ୍ୱପ୍ନ-ବାର୍ତ୍ତା ଶୁଣ, କିଛି କହ ନାହିଁ, ପରିହାସ କରିବାକୁ ଗଲେ ପୁଣି କେହୁ ଅପବାଦ ରଟାଇବ । (୧୦) ଶୀଘ୍ର ନୀବିବନ୍ଧନ ଖୋଲି ପକାଇଲି (୧୩) ତା ଭୟରେ କେଶ ଓ ବସ୍ତ୍ର ଖସିଗଲା । (୧୬) ଏଥିରେ କିଏ କଅଣ ମନରେ ଭାବି ଅପଯଶ ଗାଇବ ? ବିଦ୍ୟାପତି କହନ୍ତି କିଏ ପତିଆ ଯିବ ।

( ୨୩ )

ସଖି ହେ, ସେ ସବ କହଇତେ ଲାଜ
ଯେ କରେ ରସିକ-ରାଜ ।
ଅଙ୍ଗିନା ଆଓ୍ୱଲ ସେହ
ହାମ ଚଲନୁ ଗେହ । ୧ ।

ଅଧରୁ ଅଞ୍ଚଲ ଓର
ଫୁଇଲ କବରୀ ମୋର ।
ଧୀଠ ନାଗର ଗୋର
ପାଓ୍ୱଲ ହେମ-କଟୋର । ୨ ।

ଧରିତେ ଧସିଲ ତାୟ ,
ତୋଡଲ ନଖେର ଘାୟ ।
ଚକୋରେ ଚପଲ ଚାନ୍ଦ
ପଡଲ ପ୍ରେମେର ଫାନ୍ଦ । ୩ ।
କବି ବିଦ୍ୟାପତି ଭନ
ପୂରଲ ଦୁହୁକ କାମ ।

———

ଶବ୍ଦାର୍ଥ—(୩) ସେ ଅଗଣାକୁ ଆସିଲା, ( ୫-୬ ) ଅଧରରେ ଅଞ୍ଚଳର ପ୍ରାନ୍ତଭାଗ ଥିଲା ଓ ମୋର କବରୀ ଖୋଲା ଥିଲା, (୭) ଧୀଠ=ଧୃଷ୍ଟ, ଠ, (୮) ହେମ କଟୋର=ସୁନା ଗିନା, (୯) ଧାୟଲ=ଧାଇଁଲା, (୧୦) ଘାୟ=ଆଘାତରେ, (୧୧-୧୨) ଚପଳ ଚନ୍ଦ୍ର-ଚକୋରକୁ ପ୍ରେମ-ଫାନ୍ଦରେ ପକାଇଲା । (୧୪) ଦୁହିଁଙ୍କ କାମନା ପୂର୍ଣ୍ଣ ହେଲା ।

( ୧୪ )

ଏ ସଖି ରଜନି କି କହବ ତୋୟ
ଅବ ଏକ କୌତୁକ କହନେ ନା ହୋୟ ।
ଏ ବଲି ଅଛନୁ ଘରେ ସ୍ୱାନ ପରଧାନ
ଅଲଖିତେ ଅଓଲ କମଲ-ନୟାନ । ୧ ।
ଏ ଦ୍ୱଭେ ଝାଁପିତେ ତନୁ ଓଦକେ ଉଦାସ
ଧରଣୀ ପସିତ୍ୟୁ ଯଦି ପାଓ ପରକାସ ।
ଉରେ କୁଚ ଝାଁପିତେ ଝାଁପନ ନା ପାୟ
ମଳୟ-ସିଖର ଜନୁ ହମେ ନା ଲୁକାୟ । ୨ ।
ଧିକ୍ ଯାଓକ ଜୀବନ ଯୌବନ ଲାଜ
ଆଜୁ ମୋର ସଙ୍ଗ ଦେଖଲ ବ୍ରଜରାଜ ।
ଭନୟେ ବିଦ୍ୟାପତି ରସବତୀ ରାଇ
ଚତୁରକ ଆଗେ କଟରେ ଚତୁରାଇ । ୩ ।

———

ଶବ୍ଦାର୍ଥ—(୧) ତୋୟ = ତୋତେ, (୨) ଆଉ ଗୋଟିଏ କୌତୁକ କହି ହେଉ ନାହିଁ, ଅର୍ଥାତ୍ ତାହା ଅନିର୍ବଚନୀୟ, (୩) ଘ୍ରାନ ପରଧାନ = ଅସମ୍ପୂର୍ଣ୍ଣରୂପେ ବସ୍ତ୍ର ପିନ୍ଧିଥିଲି, (୪) ଅଲଖିତେ = ଅଲକ୍ଷ୍ୟରେ, କମଲ-ନୟାନ = କମଳ ନୟନ, (୫) ଅଙ୍ଗର ଗୋଟିଏ ପାଖ ତାଙ୍କୁ ଚାହୁଁ, ଅନ୍ୟ ପାଖ ଖୋଲା ହୋଇ ଯାଉଥିଲା । (୬) ଯଦି ଧରଣି ପ୍ରକାଶ ପାଅନ୍ତା ( ବିଦୀର୍ଣ୍ଣ ହୁଅନ୍ତା ) ତେବେ ତହିଁରେ ପ୍ରବେଶ କରନ୍ତି । (୮) ମଳୟ ଶିଖରକୁ ଯେମିତ ହିମ ଲଙ୍ଘିଇ ପାରେ ନାହିଁ, (୧୨) ଚତୁର ଆଗରେ କି ଚତୁରତା ?

( ୧୪ )

ଅଜୁକ ଲଜ ତୋହେ କି କହବା ମାଈ
ଜଲ ଦେଇ ଧୋଇ ଜଦି ତବହୁ ନ ଜାଈ ।
ନହାଇ ଉଠଲି ହମ କାଲନ୍ଦୀ ତୀର
ଅଂଗହି ଲାଗଲ ପାତଲ ଚୀର । ୧ ।
ତେଂ ବେକତ ଭେଲ ସକଲ ସରୀର
ତହିଁ ଉପନୀତ ସମୁଖ ଜଦୁବୀର ।
ବିପୁଲ ନିତମ୍ବ ଅତି ବେକତ ଭେଲ
ପାଲଟି ତାପର କୁଂତଲ ଦେଲ । ୨ ।
ଉରଜ ଉପର ଜବ ଦେହଲ ଦୀଠ
ଉର ମୋହି ବଇସଲି ହରି କରି ପୀଠ ।
ହଁସି ମୁଖ ମୋଡ଼ଏ ଡୀଠ କହ୍ନାଈ
ତନୁ ତନୁ ଝାଁପଇତେ ଝାଁପଲ ନ ଜାଈ । ୩ ।
ବିଦ୍ୟାପତି କହ ତୁହୁ ଅଗେଆନି
ପୁନି କାହେ ପଲଟି ନ ପୈସଲି ପାନି ।

———

ଶବ୍ଦାର୍ଥ—(୧) ମାଈ = ମାଆ ଗୋ ! ( ନାରୀମାନଙ୍କର ଭାବା-ତିଶଯ୍ୟ ଦ୍ୟୋତକ ପ୍ରୟୋଗ ) (୩) ନହାଇ = ସ୍ନାନ କରି, (୪) ସୂକ୍ଷ୍ମବସ୍ତ୍ର ଅଙ୍ଗରେ ଲଗିଗଲା । (୫) ବେକତ = ବ୍ୟକ୍ତ, ପ୍ରକାଶିତ, (୬) ତହି =

ତହିଁ, ସେଠାରେ, (୮) କୁନ୍ତଳ ଲେଉଟାଇ ବା ମେଲାଇ ନିତମ୍ବ ଉପରେ ପକାଇଲି, (୯) ଓରଜ=ସ୍ତନ, ଦେହଲି ଦୀଠ=ଦୃଷ୍ଟି ଦେଲି । (୧୦) ପୀଠ=ପିଠି, (୧୧) ଢ଼ୀଠ କହ୍ନାଇ=ଧୃଷ୍ଟ କାହ୍ନୁ, (୧୨) ଅଙ୍ଗ-ପ୍ରତ୍ୟଙ୍ଗକୁ ଛୁଇଁ ଦେଇବାକୁ ଚେଷ୍ଟା କଲି କିନ୍ତୁ ସଫଳ ହେଲି ନାହିଁ । (୧୩) ଅଗେଆନୀ=ଅଜ୍ଞାନୀ, ଅବୋଧୀ, (୧୪) ପୁଣି କାହିଁକି ପାଣି ଭିତରକୁ ଯାଇ ବସିପଡ଼ିଲି ନାହିଁ ।

( ୨୭ )

ସାସୁ ଘୁମାଓଲ ଛଲି କୋର ଅଗୋର
ତହ୍ନ ରତି-ଢୀଠ ପୀଠ ରହୁ ଚୋର ।
କତ କର ଆଖର କହବ ବୁଝାଇ
ଆକୁକ ଚାତୁରି କହଲି କି ଜାଇ । ୧ ।
ନା କର ଆରତି ଏ ଅବୁଝ ନାହ
ଅବ ନହି ହୋଏତ ବଚନ ନିରବାହ ।
ପୀଠ ଆଲିଙ୍ଗନ କତ ସୁଖ ପାବ
ପାନିକ ପିୟାସ ଦୂଧ କିଏ ଜାବ । ୨ ।
କତ ମୁଖ ମୋଡ଼ି ଅଧର ରସ ଲେଲି
କତ ନିସବଦ କଏ କୁଚ କର ଦେଲି ।
ସମୁଖ ନ ଜାଏ ସଘନ ନିସୋଆସ
କିଏ କାରନ ଭେଲି ଦସନ ବିକାସ । ୩ ।
ଜାଗଲି ସାସ ଚଲଲି ତବ କାନ
ନ ପୂରଲ ଆସ ବିଦ୍ୟାପତି ଭାନ ।

———

ଶବ୍ଦାର୍ଥ—(୧) ଶାଶୁ, ମୋତେ କୋଳରେ ଅବୋର (ଘୋଡ଼ାଇ) ଶୋଇଥିଲା, (୨) ସେଠାରେ ସୁରତି-ଚତୁର ( କାହ୍ନୁ ) ପଛଅଡ଼େ ଲୁଚିଥିଲା (୪) ମୁଁ ସଙ୍କେତ ଦ୍ୱାରା ଜଣାଇଲି "ଆଜି ତୁମ ଚାତୁରୀ ସଫଳ ହେବାର ବାଟ ନାହିଁ, ( ୫-୬ ) ଅବାଙ୍କ ନାଗର । ଏତେ ଆଗ୍ରହ କର ନା, ବର୍ତ୍ତମାନ ବଚନର ନିର୍ବାହ ହେବାର ନୁହେଁ, ( ୭-୮ ) ପଛଅଡ଼େ

ଆଲିଙ୍ଗନ କଲେ ମଧ୍ୟ କେତେ ସୁଖ ପାଇବି ? ପାଣି ପିଇବାର ପିପାସା କଅଣ ଦୁଗ୍ଧ ପାନ କଲେ ମଧ୍ୟ ଯିବ ? ( ୧୧-୧୨ ) ସମ୍ମୁଖରେ ନିଶ୍ୱାସ ପର୍ଯ୍ୟନ୍ତ ସଘନ ଭାବରେ ଅର୍ଥାତ୍ ପ୍ରବଳ ରୂପରେ ଚଳୁଛନ୍ତି, ହାସ୍ୟ-ଛଟା କେବଳ ଦନ୍ତବିକାଶ ଦ୍ୱାରା ( ସସ୍ମିତ ବଦନ ହେବା ଦ୍ୱାରା ) ହିଁ ପ୍ରକଟିତ ହେଉଛି ।

( ୧୭ )

ଏକଲି ଅଛିନୁ ହାମ ଗାଁଥଇତେ ହାର
ସଗରି ଖସଲି କୁଚ-ଚୀର ହମାର ।
ଦେଖଇତେ ହାସି ହାସି ଅଞ୍ଚଲ କାନ୍ତ
କୁଚ କଏ ଝାଁପବ, କଏ ନୀବିବନ୍ଧ । ୧ ।

ହାସି ବହୁ ବଲ୍ଲଭ ଆଲିଙ୍ଗନ ଦେଲ
ଧୈରଜ-ଲଜ ରସାତଲ ଗେଲ ।
କରେ କି ବୁଝାୟବ ହୃଦୟ ଦୀପ
ଲଜେ ନା ଜାୟଲ ଏ କଠିନ ଜୀବ । ୨ ।

ବିଦ୍ୟାପତି କହେ ମନମଥ କାଜ
ଜୀବନ सौंपल ଜାହେ, ତାହେ କଏ ଲଜ ।

———

ଶବ୍ଦାର୍ଥ—(୧) ଏକୋକିନୀ ହାର ଗୁନ୍ଥୁଥିଲି (୨)ସଗରି=ସକଳହିଁ ସମସ୍ତ ହିଁ, (୩) ଦେଖଇତେ=ଦେଖିବାବେଳେ, ସହସା, ତତ୍କ୍ଷଣାତ୍, (୪) ସ୍ତନ ଢାଙ୍କିବ କଅଣ ? ନୀବୀବନ୍ଧ ବା ଢାଙ୍କିବ କଅଣ ? (୬) ଧୈରଜ= ଧୈର୍ଯ୍ୟ, (୭) ପ୍ରଦୀପଟା ହୃଦରେ ଥିଲି, ହାତରେ ଲିଭାନ୍ତି ବା କେମିତି ? (୯-୧୦) ବିଦ୍ୟାପତି କହନ୍ତି । ଏ କାର୍ଯ୍ୟ ହେଉଛି ମାର୍ମିକ, ଯାହାକୁ ଜୀବନ ସମର୍ପଣ କରିଛୁ ତା' ଠାରେ ଅଭ ଲଜ କଅଣ ? ।

( ୯୮ )

ଜଟିଲ୍ଲ ସାସ ଫୂକର ଉହ୍ନ ବୋଲଲ୍
ବହୁର୍ ବେର୍ ଭାହେ ଠାଢ଼ ।
ଲଲ୍ତା ଭହଲ୍ ଅମଂଗଲ୍ ସୁନଲ୍
ସଭ ପଭିଭ୍ୟୁ ଅବଗାହୁ । ୧ ।
ସୁନି ଭହ ଜଟିଲ୍ଲ ଘଟଲ୍ କି ଅକୁସଲ
ଘର ସୱୁଁ ବାହର ହୋୟୁ ।
ବହୁରକ ପାନି ଧରି ହେରହ ଜୋଗୀ
କିଏ ଅକୁସଲ୍ ଭହ ମୋହୁ । ୨ ।
ଜୋଗେସ୍ୱର ଫେର ବହୁରକ ପାନି ଧରି
କୁସଲ୍ ଭରବ ବନଦେବ ।
ଇହେ ଏକ ଅଂକ ବଂକ ବିସଂକର୍ଣ୍ଣ
ବନ ମଧି ପସୁପତି ସେବ । ୩ ।
ପୂଜନକ ଢଂସ-ମଂସ ବହୁ ଅଛୟେ
ସେ ହମ କିଛୁ ନହି ଜାନ ।
ଜଟିଲ୍ଲ ଭହ ଅନ ଦେବ ଭାହିଁ ପାଓବ
ତୁହୁ ବୀଜ ଭର ଇହ ଦାନ । ୪ ।
ଏତି ସୁନି ଦୁହୁଜନ ମଂଦିର ପଇସଲ
ଦୁହୁ ଜନ ଭେଲ୍ ଏକ ଠାମ ।
ମନମଥ ମଂତ୍ର ପଢାଓଲ୍ ଦୁହୁ ଜନ
ପୂରଲ୍ ଦୁହୁ ମନକାମ । ୫ ।
ପୁନୁ ଦୁହୁ ଜନ ମଂଦିର ସୱୁଁ ନିକସଲ
ଜଟିଲ୍ଲ ସୱୁଁ ଭହ ଭାଷୀ ।
ଜବ ଇହ ଗୌରି ଅରାଧନ ଜାଓବ
ବିଧୱା ଜନ ଘର ରାଖୀ । ୬ ।
ଏତି କହି ସବହୁ ଚଲଲି ନିଜ ମଂଦିର
ଜୋଗୀ ଚରନ ପ୍ରନାମ ।
ବିଦ୍ୟାପତି ଭହ ନଟବର ସେଖର
ସାଧି ଚେଲଲି ମନ କାମ । ୭ ।

---

( ଯୋଗୀଶ୍ୱର ବେଶଧାରୀ ଶ୍ରୀକୃଷ୍ଣ ଶ୍ରୀମତୀଙ୍କ କରରେଖା ପରୀକ୍ଷା ପୂର୍ବକ ତାଙ୍କ ସଙ୍ଗେ ମିଳନର ଆୟୋଜନ କରିଥିବା କଥା ଏଥିରେ ବର୍ଣ୍ଣିତ )

ଅର୍ଥ—ଶାଶୁ ଜଟିଳା ଚିତ୍କାର କରି କହିଲା; ହେ ବୋହୂ, ବାହାରେ ଠିଆ କାହିଁକି ହୋଇଛୁ ? ଲଳିତା ( ସଖୀ ) କହିଲା । "ଅମଙ୍ଗଳ ବିଷୟ ଶୁଣି, ସତୀ, ପତି ବିଷୟକ ଭୟରେ ଅଭିଭୂତା !" ଏହା ଶୁଣି ଜଟିଳା ଘରୁ ବାହାରକୁ ଆସି କହିଲା—କି ପ୍ରକାରର ଅକୁଶଳ ଘଟିଲା ? ହେ ଯୋଗୀ, ବଧୂର ହସ୍ତ ଧରି ଦେଖ, ଆଜି ମୋତେ କଅଣ ଅକୁଶଳ ଚିହ୍ନ ଅଛି ଜଣାଅ । ଗମନୋଦ୍ୟତ ଯୋଗୀଶ୍ୱର ଫେରି ରହିଲେ ଓ ବଧୂର ହସ୍ତଧାରଣ ପୂର୍ବକ କହିଲେ,—"ବନଦେବ କୁଶଳ କରିବେ, ଏହି ଗୋଟିଏ ରେଖାକୁ ଆଶଙ୍କା ଜନକରୂପେ ବକ୍ର ଦେଖୁଛି, ବନକୁ ଯାଇ ପଶୁପତିଙ୍କ ସେବା କର । "ପ୍ରକାର ମନ୍ତ୍ର ତନ୍ତ୍ର ଅନେକ ଅଛି ସେ ସବୁ ଏହାକୁ ଜଣା ନାହିଁ," ଜଟିଳା କହିଲା ଅନ୍ୟ ଗୁରୁ ପାଇବି କାହିଁ ? ତୁମ୍ଭେହିଁ ଏହାକୁ ବୀଜ ( ମନ୍ତ୍ର ) ଦାନ କର । ଏ ସବୁ କଥା ପରେ ଦୁହେଁ ( ଯୋଗୀଶ୍ୱର ବେଶଧାରୀ ଶ୍ରୀକୃଷ୍ଣ ଓ ଶ୍ରୀମତୀ ରାଧା ) ଗୃହାଭ୍ୟନ୍ତରକୁ ପ୍ରବେଶ କଲେ ଓ ଗୋଟିଏ ସ୍ଥାନରେ ମିଳିତ ହେଲେ । ଉଭୟଙ୍କ କନ୍ଦର୍ପ ମନ୍ତ୍ରପାଠ କରାଇଲା ଓ ଉଭୟଙ୍କ ମନୋକାମନା ପୂର୍ଣ୍ଣହେଲା । ଗୃହାଭ୍ୟନ୍ତରରୁ ପୁନର୍ବାର ଦୁହେଁ ବାହାରିଲେ ଓ ଜଟିଳାକୁ ଯୋଗେଶ୍ୱର ଜଣାଇଲେ—"ଯେତେବେଳେ ଗୌରୀ—ପୂଜନ ନିମିତ୍ତ ଶ୍ରୀମତୀ ବନକୁ ଯିବ, ସେତେବେଳେ ଗୃହରେ ଜଣେ ବଧୂକୁ ରକ୍ଷିବାକୁ ହେବ" ଏହି କଥା କୁହା ହେଲା ପରେ, ସମସ୍ତେ ଯୋଗୀଙ୍କ ଚରଣରେ ପ୍ରଣାମ ଜଣାଇ ନିଜ ମନ୍ଦିରକୁ ଗଲେ, ବିଦ୍ୟାପତି କହନ୍ତି—ନଟବର ଶେଖର ଅଭୀଷ୍ଟ ସିଦ୍ଧ କରି ଚାଲିଗଲେ ।

( ୧୯ )

କୁଚ ଯୁଗ ଚରୁ ଧରାଧର ଜାନି
ହୃଦ ପୈଠବ ଜନି ତଥ୍ରି ଦଲ ପାନି ।
ଘମବିନ୍ଦୁ ମୁଖେ ହେରଇ ନାହ
ଚନ୍ଦ୍ରସ୍ରେ ହରସ ସରସ ଅବଗାହ । ୧ ।

ବୁଝଇ ନା ପାରଯେ ପିଯ଼ମୁଖ ଭାଷ
ବଦନ ନିହାରିତେ ଉପଜଯେ ହାସ ।
ଆପନ ଭାବ ମୋହେ ଅନୁଭାବ
ନା ବୁଝଯେ ଯୌବନ କଯେ ସୁଖ ପାବ । ୨ ।

ତା କର ବଚନେ କଯ଼ଲ୍ ସବ କାଜ
କି କହବ ସୋ ଅବ କହଇତେ ଲାଜ ।
ଏ ବିପରୀତ ବିଦ୍ୟାପତି ଭାନ
ନାଗରୀ ରମଇତେ ଭଯ଼ ନାହି ମାନ । ୩ ।

ଅର୍ଥ—ଗୁରୁ କୁଚଯୁଗଳକୁ ଧରାଧର ( ଶୈଳ ) ଜାଣିକରି, ତାଳେ ହୃଦୟାଭ୍ୟନ୍ତରକୁ ଏହି ଶୈଳଯୁଗଳ ପଶିଯିବ ଏହି ଭୟରେ, ପ୍ରଭୁ ହସ୍ତକୁ ପ୍ରଦାନ କଲା । ମୁଖରେ ମୋର ଘର୍ମବିନ୍ଦୁ ଦେଖି ନାଥ ହର୍ଷ—ସରସୀରେ ଅବଗାହନ ପୂର୍ବକ ଚୁମ୍ବନ ଦେଲା । ମୁଁ ପ୍ରିୟତମର ମୁଖୋ-ଚ୍ଚାରିତ ବାଣୀକୁ ବୁଝି ପାରେ ନାହିଁ, ମୁଖ ବିଲୋକନ ମାତ୍ରକେ ମୋର ହାସ୍ୟ ଉପୁଜେ । ନିଜ ଭାବରେ ମୋତେ ସେ ଅନୁଭାବିତା କରେ ( ଅର୍ଥାତ୍ ନିଜଭାବକୁ ମୋ ଅନ୍ତରରେ ସଞ୍ଚାରିତ କରେ ), ମୁଁ ବୁଝିପାରେ ନାହିଁ ଯେ, ଏପରି କଲେ ସୁଖ ପାଇବି, ତା କଥା ଅନୁସାରେ ଯାବତୀୟ କାର୍ଯ୍ୟ କରିଗଲି, କଅଣ ଅଉ କହିବି ? ଏବେ ତାହା କହିବାକୁ ଲଜ୍ଜା ମାଡ଼ୁଛି । ବିଦ୍ୟାପତି କହନ୍ତି, ଏହା ବିପରୀତ ଅଟେ, ଏଭଳି ନାଗରୀ ରମଣକୁ ଭୟଜନକ ମଣେ ନାହିଁ ।

( ୬୦ )

ଅଜୁ ମଝୁ ପରମ ଭରମ ରହୁ ଦୂର
ଅପନ ମନୋରଥ ସୋ ପରିପୂର ।
କି କହବ ରେ ସଖି କହଇତେ ହାସ
ସବ ବିପରୀତ ଭେଲ୍ ଅଜୁକ ବିଲାସ । ୧ ।

ଜଲଧର ଉଲଟି ପଡ଼ଲ୍ ମହୀମାଝ
ଉପଲ୍ ଗୁରୁ ଧରାଧର-ରାଜ ।
ମରକତ ଦରପନ ହେରଇତେ ହାମ
ଊଚ ନୀଚ ନା ବୁଝି ପଡ଼ଲ୍ ସେଇ ଠାମ । ୨ ।

ପୁନ ଅନୁମାନିଏ ନାଗର କାନ
ତାକର ବଚନେ ଭେଲ ସମାଧାନ ।
ନିକାସେ ବାସ ପୁନ ଦେୟଲ ସୋଇ
ଲଜେ ରହନୁ ହୃଦୟେ ଅନଲ ଗୋଇ । ୩ ।
ସୋଇ ନାଗର-ବର କୋଲେ ଅଗୋର
ଅଁଚଲେ ଶ୍ରମଜଲ ମୋଛଲ ମୋର ।
ମୃଦୁ ବୀଜଇତେ ଘୂମନୁ ଠାମ
ଭନୟେ ବିଦ୍ୟାପତି ରସ ଅନୁପାମ ।

———

ଶବ୍ଦାର୍ଥ—( ୨ ) ସେ ଆପଣା ମନୋରଥ ପୂର୍ଣ୍ଣ କରନେଲେ । ( ୪ ) ଭେଲ=ହେଲା (୫) ଜଲଧର=ପୟୋଧର, (୬) ଉପୂଲ= ଉଦିତ ହେଲା, (୮) ଓର=ଓଛ. ପଡଲ=ପଡ଼ିଲି, ଠାମ=ସ୍ଥାନ, ମୁଁ ମରକତ ଦର୍ପଣ ଦେଖି ଊର୍ଦ୍ଧ୍ୱ ଅଧଃ ବିଗ୍ଭର ନ କରି ସେହି ସ୍ଥାନରେ ପଡ଼ିଲି, (୧୦) ତାକର—ତାର, (୧୧) ସେ ମୋ ଅଙ୍ଗରେ ପୁଣି ବସନ ଦେଲେ, । (୧୨) ଲଜ୍ଜାନଲ ହୃଦୟରେ ଲୁଚାଇ, (୧୩) ଅଗୋର= ଅବୋର, (୧୪) ମୋର=ମୋର, (୧୫) ମୃଦୁ ବ୍ୟଜନ କରିବାରୁ ମୁଁ ଶୋଇପଡ଼ିଲି, ଅନୁପାମ=ଅନୁପମ ।

( ୨୧ )

ସଖି ହେ କି କହବ କଛୁ ନହି ଫୂର
ସପନ କି ପରତେଖ କହଏ ନ ପାରଏ
କିଏ ନିୟରେ କିଏ ଦୂର । ୧ ।

ତଡ଼ିତ-ଲତା ତଲ ଜଲଦ ସମାରଲ
ଆଁତର ସୁରସର ଧାରା ।
ତରଲ ତମିର ସସି ସୂର ଗରାସଲ
ଚୌଦିସ ଖସି ପଡ଼ ତାରା । ୨ ।

ଅମ୍ବର ଖସଲ ଧରାଧର ଉଲଟଲ
ଧରଣୀ ଡଗମଗ ଡୋଲେ ।
ଖରତର ବେଗ ସମୀରନ ସଂଚରୁ
ଚଂଚରଗନ କରୁ ରୋଲେ । ୩ ।
ପ୍ରଳୟ-ପୟୋଧି ଜଲେ ଜନ ଝାଁପଲ
ଇ ନହ ଜୁଗ ଅବସାନ ।
କେ ବିପରୀତ କଥା ପତିଅଏତି
କବି ବିଦ୍ୟାପତି ଭାନ । ୪ ।

---

ଶବ୍ଦାର୍ଥ—(୧) ହେ ସଖି । କହବ କଅଣ ? କଥାର ଯେ ସୀମା ନାହିଁ, (୨) ପରଂତେଖ = ପ୍ରତ୍ୟକ୍ଷ, (୪) ସମାରଲ = ସମ୍ଭୂତ ହେଲ, ଆଁତରେ = ଅନ୍ତରରେ, (୬) ଗରାସଲ = ଗ୍ରାସିଲା, ସୂର = ସୂର୍ଯ୍ୟ (୯) ଡୋଲେ = ଦୋଲାୟମାନ ହୁଏ, (୧୦) ସଂଚରୁ = ସଞ୍ଚାରିତ ହୁଏ, (୧୧) ଚଂଚରୀଗନ = ଭ୍ରମରୀ ସମୂହ, କରୁ ରୋଲେ = ଝଙ୍କାର କରନ୍ତି, (୧୨ ଜନ ଝାଁପଲ = ଯେପରି କି ଢାଙ୍କିଦେଲା । (୧୩) ଏହାତ ଯୁଗ ଅବସାନର ସମୟ ନୁହେ । (୧୪) ବିପରୀତ କଥାକୁ କିଏସେ ବିଶ୍ୱାସ କରିବ ।

( ୬୨ )

କହ କହ ସଖି ନିକୁଞ୍ଜ ମନ୍ଦିରେ
ଅଜୁ କି ହୋଯଲ ଧନ୍ଦ ।
ଚପଲେ ଝାଁପଲ ଜନୁ ଜଲଧର
ନୀଲ ଉପଲ ଚନ୍ଦ । ୧ ।
ଫଂଣୀ ମଣିବର ଉଗରେ ନିରେଖି
ଶିଖିଣୀ ଅନତ ଚେଲ ।
ସୁମେରୁ ଉପରେ ସୁରତରଙ୍ଗିଣୀ
କେବଲ ତରଲ ଭେଲ । ୨ ।
କଙ୍କିଣୀ କଙ୍କନ କରୁ କଲରବ
ନୂପୁର ଅଧିକ ଗାହେ ।
ସୁକାମ ନଟନେ ତୁରିୟପତିକ ହୁ
ଯୌବନ ସକଲ ସୋହେ । ୩ ।

ନା କର ଗୋପନେ ନିଜ ପରିଜନେ
ଇହ ବୁଝି ଅନୁମାନ ।
ବିଦ୍ୟାପତି କହ କୃପାଯ୍ ତାହାର
କୋ ନ ଜାନେ ଇହ ଗାନ । ୪ ।

---

ଟୀକାର୍ଥ—(୨) ଆଜ କଅଣ ବିଷମ ସମସ୍ୟା ଜାତ ହେଲା ? (୩—୪) ଯିମିତି ଜଳଧରକୁ ଚପଳା ଢାଙ୍କିଲା, ଅବା ଚନ୍ଦ୍ର ନୀଳୋତ୍ପଳକୁ ଅଚ୍ଛାଦିତ କଲା । (୬) ଉଗରେ=ଉଦ୍‌ଗାର କରେ, (୭) ମଧୁପ ଅନ୍ୟବ ଗନ୍ଧ, (୮) ତରଲ=ଚଞ୍ଚଳ, 'ଊର୍ମିଭିସ୍ତରଳା ବଭୂବ" ଇତି ମହାଜନ ବ୍ୟାଖ୍ୟା । (୯) ତୁରିଯତିକ ହୁ=ତୌର୍ଯତ୍ରିକ ହୋଇ, (ତୌର୍ଯତ୍ରିକର ଅର୍ଥ—ଗୀତ; ନୃତ୍ୟ ଓ ବାଦ୍ୟାବଳୀସଂଜାତ ସ୍ୱର ଲହରୀର ସରସ ସମାହାର ) (୧୨) ଶୋହେ=ଶୋଭେ, (୧୪) ତହାଯ୍ କୃପାବଳରେ କୁହ ବିଦ୍ୟାପତିଙ୍କ ଏହି ଗାନ ନ ବୁଝେ ଅବା କିଏ ? ।

( ୬୩ )

କି କହବରେ ସଖି ତେଲ ବିଲାସ
ବିପରୀତ ସୁରତ ନାୟକ ଅଭିଲାଷ ।
ମାନାୟତ ନାୟର ହୃଦେ ରହୁ ଲଜ
ଅବିରତ କିଙ୍କିଣି-କଙ୍କନ ବାଜ । ୧ ।

ସୁନଇତେ ଐସନ ଲହୁ ଲହୁ ଭାସ
ଦୁହୁଁ ମୁଖ ହେରଇତେ ଉପଜଲ ହାସ ।
ସ୍ରମ-ଜଲ ଚନ୍ଦ୍ର ମୁଖେ ସୁନ୍ଦର ଜ୍ୟୋତି
କନକ-କମଲ ଜୈସେ ଫୁଟିରହୁ ମୋତି । ୨ ।

କୁଚଯୁଗ କନକ ଧରାଧର ଜାନି
ଭାଙ୍ଗି ପଡ଼ଲ ଜନି ପଦ୍ମଦଲ ପାନି
ଭନୟେ ବିଦ୍ୟାପତି ସୁନ ବର-ନାରି
ନହଲେ କି ବସ ହୋୟ ତୋହାରି । ୩ ।

---

ଶବ୍ଦାର୍ଥ—(୬) ନାଗର ମନାଇଲ ବା ସ୍ୱୀକାର କରାଇଲ, ଲଜ୍ଜା ଦୂରରେ ରହିଲ (୮) ଲହୁ ଲହୁ=ଲଘୁ ଲଘୁ, (୯) ଧରାଧର=ପର୍ବତ, (୧୦) ଭାଲେ ଭଙ୍ଗି ପଲ୍ଲବ ବୋଲି ପ୍ରଭୁ ଵରାକର୍ଷଣ କଲ ।

( ୨୪ )

ବିଗଲିତ ଚିକୁର ମିଲିତ ମୁଖମଣ୍ଡଳ
ଚାନ୍ଦେ ବେଢ଼ଲ ଘନମାଲ ।
ମଣିମୟ କୁଣ୍ଡଳ ଶ୍ରବଣେ ଦୁଲିତ ଭେଲ
ଘାମେ ତିଲକ ବହି ଗେଲ । ୧ ।

ସୁନ୍ଦରି ତୁଯ୍ୟା ମୁଖ ମଙ୍ଗଲଦାତା
ରତି ବିପରୀତ ସମରେ ଯଦି ରାଖବି
କି କରବ ହରିହର ଧାତା । ୨ ।

କିଙ୍କିଣୀ-କିନି କିନି କଙ୍କନ କ୍ୱନ କ୍ୱନ
ଘନ ଘନ ନୂପୁର ବାଜେ ।
ଚଲିଲ ଏକ ଜଘନ ସଘନ ରବ କରଇତେ
ହୋଯିଲ ସୈନିକ ଭଙ୍ଗ ।
ବିଦ୍ୟାପତି ପତି ଓ ରସଗାହକ
ଯାମୁନେ ମିଲିଲ ଗଙ୍ଗ ତରଙ୍ଗ । ୩ ।

---

ଅର୍ଥ—(୧) ବିଗଳିତ ଅର୍ଥାତ୍ ଉନ୍ମୁକ୍ତ ଓ ବିସ୍ତୃତ କେଶଜାଲ ବଦନ ମଣ୍ଡଳରେ ଏପରି ଭାବରେ ମିଳିତ ହୋଇଛି, ଯେପରି କି କଳା ବଉଦମାଳ ଚନ୍ଦ୍ରକୁ ବେଢ଼ି ରହିଛି । (୬) ରାଖବି=ରଖିବୁ, କର୍ମ ସ୍ଥଗିତ ରଖିବୁ, "ତଦ୍ରସଂ ଯଦି ସ୍ଥଗୟସି, ତଦା ହରିହରବିଧୟଃ କିଂ କରିଷ୍ୟନ୍ତି, ବାମ୍ଗତ ଚିତାଧୀନୋଽହଂ" ଇତି ମହାଜନ ବ୍ୟାଖ୍ୟା । (୧୨—୧୩) ବିଦ୍ୟାପତି ( ଶ୍ରୀକୃଷ୍ଣ ) ଏହି ରସରେ ସୁରସିକ, ଯାମୁନରେ ଅର୍ଥାତ୍ ଯମୁନାଜଳଧାରା ( ଶ୍ୟାମ ) ରେ ଗଙ୍ଗା ତରଙ୍ଗ ମିଶିଛି, ( ବିପରୀତ ମିଳନ ବର୍ଣ୍ଣନାରେ ନାୟକ ଯାମୁନ ଓ ନାୟିକା ଗଙ୍ଗା-ତରଙ୍ଗରୂପେ ଉପମିତ )

( ୨୫ )

ମଦନ ମଦାଲସେ ସ୍ୟାମ ବିଭୋର
ସଖୀମୁଖୀ ହାସି ହାସି କରୁ କୋର ।
ନୟନ ଢୁଲଢୁଲ ଲହୁ ଲହୁ ହାସ
ଅଙ୍ଗ ହେଲହେଲ ଗଦ-ଗଦ ଭାସ । ୧ ।

ସେବତୀ ନାରୀ ରସିକ-ବର କାନ
ରଦ୍ଧ ରଦ୍ଧ ଚୁମ୍ବଇ ନାହ ବୟାନ ।
ଦୁହୁ ପୁନ ମାତଲ ଦୁହୁଁ ସର-ହାନ
ବିଦ୍ୟାପତି କରୁ ସୋ ରସଗାନ । ୨ ।

---

ଶବ୍ଦାର୍ଥ—(୨) କୋର = କୋଳ ।

( ୨୬ )

ଅବ୍ କାହେ ତୋହ୍ମ ଯୌବନ ଦେଖି
ହୋୟ ଢୁଲ୍ ଢୁଲ୍ ଅରୁଣ ଆଁଖି
ଅଙ୍ଗ ଦେଇ ମୋଡ଼ି କହୁଛ କଥା
ଜନୁ ଅନ୍ତରେ କି ଭେଲ ବ୍ୟଥା । ୧ ।

ସଘନେ ଗଗନେ ଗମନ୍ଛ ଢାରି
ଦେବ ଅପଘାତ ହୋଇଯାଛେ ପାରି ।
ଯଦ ନା କହସି ଲୋକେର ଲାଜେ
ମରମୀ ଜନକ ମରମେ ବାଜେ । ୨ ।

ଆଁଚରେ କାଞ୍ଚନ ଝଲକେ ଦେଖି
ପ୍ରେମ କଲେବର ଦୟାଛେ ସାଖି ।
ବିଦ୍ୟାପତି କହ ଏ କଥା ଦଢ଼
ଗୋପନ ପୀରତି ବିସମ ବଡ଼ । ୩ ।

---

ଶବ୍ଦାର୍ଥ—(୪) ଜନୁ=ଯେପରି, (୬) ପାଓ=ପ୍ରାପ୍ତ, ପାଇ, (୮) ଜନକ=ଜନର, (୯) ଆଁଚରେ=ଅଞ୍ଚଳରେ, (୧୦) ସାଖୀ=ସାକ୍ଷ୍ୟ, (୧୧) ଦଢ଼=ଦୃଢ଼, ନିଷ୍ଠିତ ।

( ୬୭ )

ତୁହୁ ଯଦି ମାଧବ ଚୂହସି ଲେହ
ମଦନ ସାଖି କରି ଖିତି ଲିଖି ଦେହ ।
ଛୋଡ଼ବି କେଲି—କଦମ୍ବବିଲାସ
ଦୂରେ କରବି ନିଜ ଗୁରୁଜନ ଆଶ । ୧ ।
ମୋ ବିନୁ ସ୍ୱପନେ ନା ହେରବି ଆନ
ହାମାରି ବଚନେ କରବି ଜଲପାନ ।
ରଜନୀ—ଦିବସ ଗୁନଗାଓବି ମୋୟ
ଆନ ଯୁବତୀ କୋର ନା କରବି କୋୟ । ୨ ।
ଯୌବନ କବଚ ଧରବି ଜବି ହାଥ
ତବହୁଁ ତୁହୁଁ ସଙ୍ଗେ ମରମକ ବାତ ।
ଭନଇ ବିଦ୍ୟାପତି ସୁନ ବରନାରି
ମାନ ରହୁକ ପୁନ ଯାଉକ ପରାନ ।

———

ଶବ୍ଦାର୍ଥ—(୧) ଲେହ=ଚୁମ୍ବନ, ସ୍ନେହ, (୨) ମଦନକୁ ସାକ୍ଷୀ କରି ପ୍ରତିଶ୍ରୁତି ପତ୍ର ଲେଖି ଦିଅ । (୦) ନିଜ ଗୁରୁଜନଙ୍କ ଆଶା ଛାଡ଼ିବୁ (୮) କୋର=କୋଳ, (୯) କବଚ=ଚୁକ୍ତିପତ୍ର,ପ୍ରତିଶ୍ରୁତି ପତ୍ର ।

( ୬୮ )

ଚରନ ନଖର—ମନି ରଞ୍ଜନ ଛାନ୍ଦ
ଧରଣୀ ଲୋଟାୟଲ ଗୋକୁଲ—ଚାନ୍ଦ ।
ଢରକି ଢରକି ପଡ଼ୁ ଲୋଚନ—ଲୋର
କତ ରୂପେ ମିନତି କୟଲ ପହୁଁ ମୋର । ୧ ।

ଲଟଲେ କୁନ୍ଦନ କପୂଲ୍ ହାମ ମାନ
ଅବ ନାହିଁ ଣିକଁସଯେ କଠିନ ପରାନ ।
ବେସ ତିମିର ଏତ ବେଶ୍ଵ କ ଜାନ
ବଡନକ ଭେଗେଲ ଦୈବକ ଭାନ । ୨ ।
ନାଗ୍ରି ଜନମେ ହାମ ନା କରବୁ ଭାଗି
ମରନ ସରନ ଭେଲ ମାନକ ଲଗି ।
ବିଦ୍ୟାପତି କହ ସୁନ ବରନାରି
ପ୍ରେମ ଅମିଯ୍ୟା ରସେ ଲୁବ୍‌ଧ ମୁରାରି । ୩ ।

---

ଅର୍ଥ— ଚରନ ନଖର ମନ ରଞ୍ଜନ, ଅର୍ଥାତ୍ ପଦନଖ ରଞ୍ଜନ କରିବାର ମଣିମୟ ସାମଗ୍ରୀ ଯେଉଁ ଛନ୍ଦରେ ( ଯେଉଁ ଧରଣରେ ) ପ୍ରଯୁକ୍ତ ହୁଏ, ଗୋକୁଳଚନ୍ଦ୍ର ସେହି ଛନ୍ଦରେ ଅପାଦ ମସ୍ତକ ଧରଣୀ ତଳରେ ବିଲୁଣ୍ଠିତ ହେଲ । ପ୍ରଭୁ ମୋର, କେତେ ପ୍ରକାରରେ ମିନତି ଜଣାଇଲ ? ବଡ଼ ଦୁର୍ଦ୍ଦିନ ଉପସ୍ଥିତ ହୋଇଥିଲ, ମୁଁ ମାନ କଲି; ଏବେ କଠିଣ ପ୍ରାଣର ନିର୍ଗମନ ହେଉ ନାହିଁ । ଘୋଧାନ୍ଧକାର ଏଡ଼େ ଶବ୍ଦ ବୋଲି ଜଣା ନ ଥିଲ, ରବି ମଧ୍ୟ ମୋ ଦୃଷ୍ଟିରେ ଜେଚ୍ଛୁଦ୍ରବାପଲ ପ୍ରତୀତ ହେଲ, ନାରୀଜନ୍ମରେ ମୁଁ ଭାଗ୍ୟ କରିନାହିଁ, ମାନ ଲଗି ମୋତେ ମରଣର ଶରଣ ଗ୍ରହଣ କରିବାକୁ ପଡ଼ୁଛି । ବିଦ୍ୟାପତି କହନ୍ତି, ସୁନ୍ଦରି ଶୁଣ, ପ୍ରେମାମୃତ ରସରେ ମୁରାରି ପ୍ରଲୁବ୍‌ଧ ।

---

## ଆକ୍ଷେପ, ଅନୁଯୋଗ, ପ୍ରବୋଧ ଓ ବିରହ

---

( ୧ )

କାନୁମୁଖ ହେରଇତେ ଭାବିନୀ ରମଣୀ
ଫୁଂକରଇ ରୋଯ୍ଵତ ଝରଝର ନୟନୀ ।
ଅନୁମତି ମାଗିତେ ବର-ବିଧୁ ବଦନୀ
ହରି ହରି ସବଦେ ମୂରଚ୍ଛି ପଡ଼ୁ ଧରଣୀ । ୧ ।

ଅକୁଲି କରି ପରିବୋଧଇ କାହ୍ନ
ଅବ ନାହି ମାଥୁର କରବ ପ୍ରୟାନ ।
ଇହ ସବ ସବଦ ପଶିଲ ଯବ ଶ୍ରବନେ
ତବ ବିରହିନୀ ଧନୀ ପାଓଲ ଚେତନେ । ୨ ।

ନିଜ କରେ ଧରି ଦୁହୁ କାନୁକ ହାତ
ଯତନେ ଧରିଲ ଧନୀ ଆପନକ ମାଥ ।
ଦୁହଁକି ଦିୟା କହେ ହେ ବର-ନାଗର କାନ
ହାମ ନାହିଁ ମାଥୁର କରବ ପ୍ରୟାନ । ୩ ।

ଜବ ଧନୀ ପାଓଲ ଇହ ଅସୋୟାସ
ଟବିଠଲି ପୁହୁ ତବ ଗ୍ଲେହ୍ନ ନିସୋୟାସ ।
ରାଇ ପରିବୋଧିୟା ଚଲଲି ମୁରାରି
ବିଦ୍ୟାପତି ଇହ କହଇ ନା ପାରି । ୪ ।

———

ଅର୍ଥ—କାହ୍ନୁଙ୍କ ମୁଖ ଦେଖିଲାରୁ ପୁଣ୍ୟବତୀ ରମଣୀ ( ଶ୍ରୀରାଧା ) ଅଶ୍ରୁଜଳ ପରିପୂରିତ-ନୟନା ହୋଇ, ଅତିକଣ୍ଠରେ କ୍ରନ୍ଦନ କରିବାକୁ ଲାଗିଲା, ଚନ୍ଦ୍ରବଦନୀ ସୁନ୍ଦରୀ, କାହ୍ନୁଙ୍କ ଅନୁମତି ଭିକ୍ଷା କଲାବେଳେ "ହରି ହରି" ଶବ୍ଦୋଚ୍ଚାରଣ ପୂର୍ବକ ଧରଣୀରେ ମୂର୍ଚ୍ଛିତା ହୋଇ ପଡ଼ିଲା । କାହ୍ନୁ ବ୍ୟାକୁଳ ହୋଇ ବହୁ ପ୍ରବୋଧ ଦେଲା । "ଏବଂ ଆଜ ମଥୁରା ଯିବି ନାହିଁ" ବୋଲି କହିଲା, ଏହି ଶବ୍ଦାବଳୀ କର୍ଣ୍ଣକୁହରରେ ପ୍ରବିଷ୍ଟ ହେବାରୁ ବିରହ-କାତରା ସୁନ୍ଦରୀ ଚେତନା ଲଭିଲା । କାହ୍ନୁର କରଯୁଗଳକୁ ସଯତ୍ନରେ ଧାରଣ କରି ସ୍ୱୀୟ ମସ୍ତକରେ ସ୍ଥାପନ କଲା ଓ କହିଲା "ହେ ସୁନ୍ଦର କାହ୍ନୁ" ତୁହି ସୁହି କହ "ମୁଁ ଆଜ ମଥୁରା ଯିବି ନାହିଁ" ଏବଂବିଧ ଆଶ୍ୱାସ ବାଣୀ ଶୁଣିଲା ପରେ, ସୁନ୍ଦରୀ ପୁନର୍ବାର ନିଶ୍ୱାସ ମାରି, ( ଗ୍ଲାନ୍ତ ) ବସିଲା । ରାଇଙ୍କୁ ପ୍ରବୋଧ ଦେଇସାରି ମୁରାରି ପ୍ରସ୍ଥାନ କଲା, ବିଦ୍ୟାପତି କହନ୍ତି—ଏ କରୁଣ ବିବରଣ ଅବର୍ଣ୍ଣନୀୟ ।

(୨)

ମାଧବ ! ବିଧୁ-ବଦନୀ
କବହୁଁ ନା ଜାନଇ ବିରହକ ବେଦନା ।
ତୁହୁଁ ପରଦେସ ଯାଓ୍ୱବ ସୁନି ଭଇ ଖୀନା
ପ୍ରେମ ପରତାପେ ଚେତନ ହରୁ ଦୀନା । ୧ ।

ବସ ଲୟ ତେଜ ଭୂମେ ସୂତଲି ଅୟାସେ
କୋକିଲ-କଲରବେ ଉଠୟେ ତରାସେ ।
ଲୋରହି କୁଚ-କୁଙ୍କୁମ ଦୂର ଗେଲ
କର-ଭୂଜ ଭୂଷନ ଖିତିତଲେ ମେଲ । ୨ ।

ଅନତ ବୟାନେ ରହି ହେରତ ଗୀମ
ଖିତି ଲିଖଇତେ ଭେଲ ଅଙ୍ଗୁଲି ଛୀନ ।
କହଇ ବିଦ୍ୟାପତି ସୋଙରି ଚରିତ
ସୋ ସବ ଗଣଇତେ ଭେଲି ମୁରଛିତ । ୩ ।

---

ଶବ୍ଦାର୍ଥ—(୧) କବହୁଁ = କେବେହେଁ, (୪) ପ୍ରେମ-ପ୍ରତାପରେ ଦୀନା ଓ ହୃତଚେତନା, (୫) ଭୂମେ = ଭୂମିରେ, ସୂତଲି = ଶୋଇଲା, ଅୟାସେ = କ୍ଳେଶରେ, (୬) ତରାସେ = ତ୍ରାସରେ (୭) ଲୋରହି = ନୟନାଶ୍ରୁ ଜଳରେ, (୮) କର ହସ୍ତର ଭୂଷଣ ଖିତିତଳରେ ନିପତିତ ହେଲା । (୯) ବୟାନେ = ବଦନରେ, ଗୀମ = ଗ୍ରୀବା, ପଶ୍ଚାଦ୍‌ଭାଗ, (୧୦) ଖିତିରେ ଅଙ୍କ ଲେଖୁଁ ଲେଖୁଁ ଅଙ୍ଗୁଳି କ୍ଷତ ବିକ୍ଷତ ହୋଇଛି, (୧୧) ସୋଙରି = ସ୍ମରଣ କରି, (୧୨) ଭେଲି = ହେଲା ।

(୩)

ମାଧବ, ସୋ ଅବ ସୁନ୍ଦରୀ ବାଲା
ଅବିରତ ନୟନେ ବାରି ଝରୁ ଝାଝର
ଜନୁ ସାଙନ ଘନ ମାଲା । ୧ ।

ପୂର୍ଣ୍ଣିମିକ ଇନ୍ଦୁ ନିନ୍ଦ ମୁଖ ସୁନ୍ଦର
ସୋ ଭେଲ ଅବ ସସି-ଲେହା ।
କଲେବର କମଲ-କାନ୍ତି ଜନି କାମିନୀ
ଦିନେ ଦିନେ ଖୀନ ଭେଲ ଦେହା । ୨ ।
ଉପବନ ହେରି ମୂରଛି ପଡ଼ୁ ଭୂତଲେ
ଚିନ୍ତିତ ସଖୀଗନ ସଙ୍ଗ ।
ପଦ ଅଙ୍ଗୁଲି ଦେଇ ଖିତପର ଲିଖଇ
ପାଣି କପୋଲ ଅବଲମ୍ବ । ୩ ।
ଯୌବନ ହେରି ତୁରିତେ ହାମ ଅୟନୁ
ଅବ ତୁହୁ କରହ ବିଗୁରି ।
ବିଦ୍ୟାପତି କହ ନିକରୁନ ମାଧବ
ବୁଝନୁ କୁଲିସକ ସାର । ୪ ।

---

ଶବ୍ଦାର୍ଥ—(୨) ବାରହରି ନୀହର=ନିର୍ଝର ପରି ଜଳଧାରା ବହୁଛି, (୩) ସାଙନ=ଶ୍ରାବଣ, (୫) ପୂର୍ଣ୍ଣିମା ଶଶି ନିନ୍ଦିତ ମୁଖ, ବର୍ତ୍ତମାନ କ୍ଷୀଣ ଶଶିଲେଖା ବା ଶଶିରେଖା ସଦୃଶ ହୋଇଛି, (୧୧) କପୋଳ-ବିନ୍ୟସ୍ତକର ହୋଇଥାଏ, ଅର୍ଥାତ୍ ଗାଲରେ ହାତ ଦେଇଥାଏ, (୧୪) 'ନିକରୁଣ=କରୁଣାଶୂନ୍ୟ, (୧୫) କୁଲିସକ ସାର=ବଜ୍ରର ସାରାଂଶବତ୍ କଠୋର ।

( ୪ )

ସଖି ହେ ମନ୍ଦ ପରିନାମା
ବରକେ ଜୀବନ କଯ଼ିଲ ପରାଧୀନ
ନାହି ଉପକାର ଏକ ଠାମା । ୧ ।
ଝାପନ ରୂପ ଲଖଇ ନା ପାରନୁ
ଅଇତେ ପଡଲହୁ ଧାଇ ।
ତଖନକ ଲଘୁ ଗୁରୁ କଛୁ ନା ବିଗୁରନୁ
ଅବ ପାଛୁ ତରଇତେ ଗୁଇ । ୨ ।

ମଧୁ ସମ ବଚନ ପ୍ରେମ ସମ ମାନୁଷ
ପହିଲହି ଜାନଲ ନ ଭେଲ ।
ଆପନ ଚତୁର ପନ ପରହାତେ ସୋପନୁ
ହୃଦ ସେଁ ଗରବ ଦୂର ଗେଲ । ୩ ।

ଏତଏ ଦିନେ ଅବୁ ଭନେ ହାମ ଅଛଲୁ
ଅବ ବୁଝଲୁ ଅବଗାହି ।
ଆପନ ମୂଳ ହାମ ଆପହି ଚୂଡଲୁ
ଦୋଷ ଦେଇବ ଅବ କାହି । ୪ ।

ଭନୟେ ବିଦ୍ୟାପତି ସୁନ-ବର ଯୁବତି
ଚିତେ ନାହି ଗୁଣବ ଆନେ ।
ପ୍ରେମ କାରଣ ଜୀଉ ଉପେଖିୟେ
ଜଗଜନ କେ ନାହି ଜାନେ । ୫ ।

———

ଅର୍ଥ—ହେ ସଖି ! କୁପୁରୁଷ ପ୍ରେମ ଘଟିଲା, ମୋ ଜୀବନ, ଲମ୍ପଟର ଅଧୀନ ହେଲାରୁ କାହିଁ ହେଲେ ( ଟିକିଏ ସୁଦ୍ଧା ) ଉପକାର ହେଲା ନାହିଁ । ଲୁକ୍କାୟିତ ରୂପ ଲକ୍ଷ୍ୟ କରି ପାରିଲି ନାହିଁ ( ଅର୍ଥାତ୍ ଦେଖି ପାରିଲି ନାହିଁ ), ଧାଇଁ ଅସ୍ପୃ ଅସ୍ପୃ ଖସି ପଡ଼ିଲି, ସେତେବେଳେ ମୋର ଲଘୁ ଗୁରୁ ବିବେଚନା ନ ଥିଲା, ପରେ ଏବେ ଉତ୍ତୀର୍ଣ୍ଣ ହେବାକୁ ଚାହୁଁଛି । ମଧୁ ସଦୃଶ ଓ ମୂର୍ତ୍ତିମାନ୍ ପ୍ରେମବତ୍ ପ୍ରତୀୟମାନ ହେଉଥିବା ମନୁଷ୍ୟକୁ ପ୍ରଥମରୁ ( ଭଲ ଭାବରେ ) ଜାଣି ହେଲା ନାହିଁ । ନିଜ ଚତୁରପଣ ପର ହାତରେ ସମର୍ପି ଦେଲି ? ହୃଦୟରୁ ଗର୍ବ ବହିଷ୍କୃତ ହେଲା, ଏତେକାଳ ପର୍ଯ୍ୟନ୍ତ ମୁଁ ଅନ୍ୟ ଭାବରେ ଥିଲି, ଏବେ ନିମଗ୍ନା ହୋଇ ( ଅବଗାହନ କରି ) ବୁଝି ପାରୁଛି ଯେ, ମୁଁ ନିଜର ମୂଳକୁ ନିଜେ ଚୂର୍ଣ୍ଣ ( ଅର୍ଥାତ୍ ଘର୍ଷଣ କରି ) ନେଇଛି, ଏବେ କାହାକୁ ଦୋଷ ଦେବି ? ବିଦ୍ୟାପତି କହନ୍ତି—ଯୁବତୀ ଶ୍ରେଷ୍ଠା ଶୁଣ, ମନରେ ଆଉ କିଛି ଭାବିବୁ ନାହିଁ, ପ୍ରେମ ପାଇଁ ଯେ ଜୀବନ ମଧ୍ୟ ଉପେକ୍ଷା କରିବାକୁ ହୁଏ, ଏ କଥା ଜଗତରେ ନ ଜାଣେ କିଏ ? ।

( ୫ )

କତହୁଁ ମଦନ ତନୁ ଦହସି ହମାରି
ହାମ ନହୁ ସଙ୍କର, ହଉ ବର ନାରୀ ।
ନହି ଜଟା ଇହ, ବେଣୀ ବିଭଙ୍ଗ
ମାଲତୀ ମାଲ ସିରେ, ନହି ଗଙ୍ଗ । ୧ ।

ମୋତିମ ବନ୍ଧ ମୌଲି, ନହ ଇନ୍ଦୁ
ଭାଲେ ନୟନ, ନହ, ସିନ୍ଦୁର ବିନ୍ଦୁ ।
କଣ୍ଠେ ଗରଲ ନହ, ମୃଗମଦ ସାର
ନହ ଫଣିରାଜ, ଉରେ ମଣି ହାର । ୨ ।

ନୀଲ ପଟାମ୍ବର ନହ ବାଘଛାଲ
କେଲିକ କମଲ ଇହ, ନାହସୁ କପାଲ ।
ବିଦ୍ୟାପତି କହେ ଏହେନ ସୁଛନ୍ଦ
ଅଙ୍ଗେ ଭସମ ନହ ମଲୟଜ ପଙ୍କ । ୩ ।

———

ଅର୍ଥ—ମଦନ କାହିଁକି ମୋର ତନୁକୁ ଦଗ୍ଧ କରୁଛୁ ? ମୁଁ ତ ଶଙ୍କର ନୁହେଁ, ମୁଁ ଯେ କାମିନୀ, (୫) ଚୂଡା ବା କଣ୍ଠ ମୁକ୍ତାରେ ଅଛି । ଏହା କେଳିସ-କମଳ, ନର-କପାଳ ନୁହେ ।

( ୭ )

ଅନୁଖନ ମାଧବ ମାଧବ ସୁମରଇତ
ସୁନ୍ଦରି ଭେଲି ମଧାଇ ।
ଓ ନିଜ ଭାବ ସୁଭାବହି ବିସରଲ
ଅପନେ ଗୁନ ଲୁବୁଧାଇ । ୧ ।

ମାଧବ, ଅପରୂପ ତୋହରି ସିନେହ
ଅପନେ ବିରହ ଅପନ ତନୁ ଜର ଜର
ଜିବଇତ ଭେଲି ସନ୍ଦେହ । ୨ ।

ଭୋରହି ସହଚରି କାତରି ଦିଠି ହେରି
ଛଲ ଛଲ ଲୋଚନ ପାନି ।
ଅନୁଖନ ରାଧା ରାଧା ରଟଇତ
ଆଧା ଆଧା ବାନି । ୩ ।

ରାଧା ସଯଁ ଜବ ପୁନତହି ମାଧବ
ମାଧବ ସଯଁ ଜବ ରାଧା ।
ଦାରୁନ ପ୍ରେମ ତବହି ନହି ଟୁଟତ
ବାଢ଼ତ ବିରହକ ବାଧା । ୪ ।

ଦହୁ ଦିସ ଦାରୁ-ଦହନ ଜୈସେ ଦଗଧଇ
ଆକୁଲ କୀଟ ପରାନ ।
ଐସନ ବଲ୍ଲଭ ହେରି ସୁଧାମୁଖି
କବି ବିଦ୍ୟାପତି ଭାନ । ୫ ।

---

ଅର୍ଥ—ଅନୁକ୍ଷଣ ମାଧବ ସ୍ମରଣ ହେତୁ, ସୁନ୍ଦରୀ ମାଧବ ହୋଇଗଲା, ଅର୍ଥାତ୍ ସୁନ୍ଦରୀର ମାଧବାବେଶ ଘଟିଲା । ସେ ସ୍ୱ-ଗୁଣ-ବିସ୍ମୃତ୍ ରାଧା ହୋଇ, ସ୍ୱ-ଭାବ ବିସ୍ମୃତା ହେଲା । ମାଧବ ! ତୋର ପ୍ରେମ ଅପରୂପ, ତୋର ପ୍ରେମାବେଶରେ ରାଧିକା ନିଜକୁ କୃଷ୍ଣ ମନେ କରି, ନିଜ ବିରହରେ ନିଜେ ଜର ଜର ତନୁ ହୋଇଛି—ତାର ଜୀବନରେ ଅର୍ଥାତ୍ ବଞ୍ଚିବାରେ ସନ୍ଦେହ ଜନ୍ମିଛି । ସେ ସର୍ବଦା ବିଭୋର ହୋଇ, କାତର ଦୃଷ୍ଟିରେ ସହଚରୀକୁ ଦେଖୁଛି, ତା ନୟନରେ ଜଳ ଛଳ ଛଳ ହେଉଛି, ସେ ଅନୁକ୍ଷଣ ଅର୍ଦ୍ଧସ୍ଫୁଟ କଣ୍ଠସ୍ୱରରେ 'ରାଧା ରାଧା' ବୋଲି ରଟୁଛି ( ଘୋଷୁଛି ) । ଯେତେବେଳେ ନିଜକୁ ରାଧା ମଣେ, ସେତେବେଳେ ମାଧବ ପାଇଁ ଝୁରି ହୁଏ, ଓ ଯେତେବେଳେ ନିଜକୁ କୃଷ୍ଣ ବୋଲି ଭାବେ ସେତେବେଳେ ରାଧା ସ୍ମରଣ କରୁଥାଏ । ଦାରୁଣ ପ୍ରେମ ସେତେବେଳେ ସୁଦ୍ଧା ଭାଙ୍ଗେ ନାହିଁ, ବରଂ ବିରହ ଯନ୍ତ୍ରଣା ବଢ଼ୁଥାଏ । ଉଭୟ ପାର୍ଶ୍ୱରେ ଦାବାନଳ ପ୍ରଜ୍ୱଳିତ ହେଲେ ଯେପରି କୀଟର ପ୍ରାଣ ବ୍ୟାକୁଳ ହୁଏ, ବଲ୍ଲଭକୁ ଦେଖିବା ସମୟରୁ ସୁଧାମୁଖୀର ଦଶା ମଧ୍ୟ ତଦ୍ରୂପ ହୋଇଛି ।

( ୭ )

ମରିବ ମରିବ ସଖି ନିଚୟ ମରିବ
କାନୁ ହେନ ଗୁଣନିଧି କାରେ ଦେଇ ଯାବ ?
ତୋମରା ଯତେକ ସଖି ରହୋ ମଝୁ ସଙ୍ଗେ
ମରନକାଲେ କୃଷ୍ଣ ନାମ ଲେଖା ମଝୁ ଅଙ୍ଗେ । ୧ ।

ଲଲିତା ପରାନ ସହି ମନ୍ତ୍ର ଦିୟୋ କାନେ
ମରାଦେହ ପଡ଼େ ଜନୁ କୃଷ୍ଣ ନାମ ସୁନେ ।
ନା ଜରୈହ ରାଧା—ଅଙ୍ଗ ନା ଭାସୈହ ଜଲେ
ମରିଲେ ତୁଲିହ ରାଖ ତମାଲକ ଡାଲେ । ୨ ।

ସେଓ ତ ତମାଲ ତରୁ କୃଷ୍ଣବର୍ଣ୍ଣ ହୟ
ଅବିରତ ତନୁ ମୋର ତାହେ ଜନୁ ରହେ ।
କବହୁ ସୋ ପିୟା ଯଦି ଆସେ ବୃନ୍ଦାବନେ
ପରାନ ପାୟବ—ହାମ ପିୟା ଦରଶନେ । ୩ ।

ପୁନ ଯଦି ଚୃଁଦମୁଖ ଦେଖନେ ନା ପାବ
ବିରହ ଅନଲ ମାହ ତନୁ ତେୟାଗିବ ।
ଭନୟେ ବିଦ୍ୟାପତି ସୁନ ବରନାରୀ
ଧୈରଜ ଧର ଚିତେ ମିଲବ ମୁରାରି । ୪ ।

---

ଶବ୍ଦାର୍ଥ— (୧) ନିଚୟ=ନିଶ୍ଚୟ, (୭) ନା ଜରୈହ=ପୋଡ଼ାଇବ ନାହିଁ, ନା ଭାସୈହ=ଭସାଇବ ନାହିଁ, (୧୪) ବିରହ ଅନଲ ମାହ= ବିରହାନଳ ମଧ୍ୟରେ ।

( ୮ )

ଜହହିଁ ଯତନ ବୈସେ ରସିକ ମୁରାରି
ତହହିଁ ଲିଖିହ ମୋର ନାମ ଦୁଇ ଚାରି ।
ମୋର ଅଙ୍ଗ ଅଭରଣ ଦିହ ପିୟା ଠାମ
ଜନମ ଅବଧି ମୋର ଏଇ ପରନାମ । ୧ ।

ସଖୀଗନ ଗନଇତେ ଲହେ ମଝୁ ନାମ
ପିୟା ମୋର ବିଦଗଧ, ବିହି ଭେଲ ବାମ ।
ନିଚୟ ମରବ ଅମି ସେ କାନୁ ଉଦେସେ
ଅବସର ଜାନି କିଛୁ ମାଗିହ ସନ୍ଦେସେ । ୨ ।
ଦିନେ ଏକ ବାର ପହୁ ଲହେ ମୋର ନାମ
ଅଛୁନ ଦୁଲହ କରୈ ଦିଅହ ଜଲ ଦାନ
ବିଦ୍ୟାପତି କହେ ସୁନ ବର-ନାରି
ଦିନ ଦୁଇ ରହି ବନ୍ଧୁ ମିଲବ ମୁରାରି । ୩ ।

---

ଶବ୍ଦାର୍ଥ— (୧) ଜହିଁହିଁ=ଯେକୌଣସିଠାରେ ମଧ୍ୟ, (୨) ତହିଁହିଁ=ସେଠାରେ ହିଁ, (୪) ମୋର ଏହା ଅଜନୁବ ପ୍ରଣାମ ଅଛି । (୭) ଉଦେସେ=ଉଦ୍ଦେଶ୍ୟରେ, (୮) ଅବସର ବୁଝି ସମାଚାର ପଚାରିବ, (୯-୧୦) ପ୍ରଭୁ ଯେପରି ଦିନ ମଧ୍ୟରେ ଥରେ ମାତ୍ର ମୋର ନାମ ଉଚ୍ଚାରଣ କରିବ ଓ ଅଛୁଣ-ଦୁର୍ଲଭ କରରେ ଏକ ଅଞ୍ଜଳି ଜଳଦାନ ଦ୍ୱାରା ମୋର ତର୍ପଣ କରିବ ।

( ୯ )

ହରି କି ମଥୁରା ପୁର ଗେଲ
ଆଜୁ ଗୋକୁଲ ସୂନ ଭେଲ ।
ରୋଦତି ପିଞ୍ଜର ସୁକେ
ଧେନୁ ଧାବଇ ମାଥୁର ମୁଖେ । ୧ ।
ଅବ ସୋଇ ଯମୁନାକ କୂଲେ
ଗୋପ-ଗୋପୀ ନାହି ବୁଲେ ।
ହାମ ସାଗରେ ତେଜବ ପରାଣ
ଆନ ଜନମେ ହବ କାନ । ୨ ।
କାନୁ ହୋୟବ ଜବ ରାଧା
ତବ ଜାନବ ବିରହକ ବାଧା ।
ବିଦ୍ୟାପତି କହ ନୀତ
ଅବ ରୋଦନ ନହେ ସମୁଚିତ । ୩ ।

---

ଶବ୍ଦାର୍ଥ—(୩) ବେଦଇ=ବେଦନ କରୁଛି, (୪) ମାଥୁର=ମଥୁରା, (୬) ଝୁରେ=ଝୁରନ୍ତି, (୮) କାନ=କାହ୍ନୁ, (୧୧) ନୀତ=ନୀତି, ଉପଦେଶ ।

( ୧୦ )

ଅବ ମଥୁରା-ପୁର ମାଧବ ଗେଲ
ଗୋକୁଲ ମାନିକ କୋ ହରି ନେଲ ।
ଗୋକୁଲେ ଉଛଲଲ କରୁନା-ରୋଲ
ନୟନ-ଜଲେ ଦେଖ ବହେ ହିଲୋଲ । ୧ ।
ସୁନ ଭେଲ ମନ୍ଦିର ସୁନ ଭେଲ ନଗରୀ
ସୁନ ଭେଲ ଦସଦିସ ସୁନ ଭେଲ ସଗରି ।
କୈସନେ ଯାଅବ ଯାମୁନ ତୀର
କୈସେ ନିହାରବ କୁଞ୍ଜ କୁଟୀର । ୨ ।
ସହଚରି ସନେ ଯାହିଁ କୈଲ ଫୁଲ-ଖେଲି
କୈସନେ ଜୀଅବ ତାହି ନିହାରି ।
ବିଦ୍ୟାପତି କହେ କର ଅବଧାନ
କୌତୁକେ ଛପିତ ତହିଁ ରହୁ କାନ । ୩ ।

ଶବ୍ଦାର୍ଥ—(୧) ଗେଲ=ଗଲେ, (୨) ନେଲ=ନେଲା, (୩) ଗୋକୁଳରେ କାରୁଣ୍ୟ ରୋଳ ଉଚ୍ଛୁଳିଲା, ହିଲୋଲ=ହିଲ୍ଲୋଳ, ତରଙ୍ଗ, (୫) ସୁନ=ଶୂନ୍ୟ, (୬) ସଗରି=ସମସ୍ତହିଁ, ସକଳହିଁ । (୭) କୈସନେ=କିପରି, ଯାଅବ=ଯିବି, ଯାମୁନ=ଯମୁନା, (୮) ନିହାରବ=ଦେଖିବି । ସହଚରୀଙ୍କ ସଙ୍ଗରେ ଯେଉଁଠାରେ ପୁଷ୍ପବର୍ଷଣ କଲି, ସେହି ସ୍ଥାନ ଦେଖି ବଞ୍ଚିରହିବି କିପରି ? । (୧୨) କାହ୍ନୁ ସେଠାରେ କୌତୁକରେ ଲୁଚି ରହିଛି ।

( ୧୧ )

ହରି ଗେଓ ମଧୁପୁର, ହାମ କୁଲବାଲା
ବିପଥେ ପଡ଼ଲ କୈସେ ମାଲତୀ-ମାଲା ।

କି କହସି କି ପୁଛସି ସୁନ ପ୍ରିୟ ସ୍ବଜନ
କୈସନେ ବଞବ ଇହ ଦିନ ରଜନୀ । ୧ ।

ନୟନକ ନିନ୍ଦ ଗେଓ, ବୟାନକ ହାସ
ସୁଖ ଗେଓ ପିୟାସଙ୍ଗ, ଦୁଃଖ ହାମ ପାସ ।
ଭନୟେ ବିଦ୍ୟାପତି ସୁନ ବରନାରି
ସୁଜନକ କୁଦିନ ଦିବସ ଦୁଇ ଚାରି । ୨ ।

---

ଶବ୍ଦାର୍ଥ—(୧) ଗେଓ=ଗଲା (୧-୨) ହରି ମଧୁପୁର ଗଲେ, କୁଳ-ବାଳା ମୁଁ ବିପଥରେ ମାଳତୀ ମାଳାବତ୍ ପଡ଼ି ରହିଲି । (୩) ପୁଛସି= ପଚାରୁଛୁ. (୫-୬) ନୟନରେ ନିଦ୍ରା ଅନ୍ତର୍ହିତ ଓ ବଦନରେ ହାସ୍ୟ ମଧ୍ୟ ବିଲୁପ୍ତ. ସୁଖ ପ୍ରିୟତମ ସଙ୍ଗରେ ଗଲା, କେବଳ ଦୁଃଖ ମୋ ପାଖରେ ରହିଲା । (୭-୮) ବିଦ୍ୟାପତି ଭଣନ୍ତି—ନାରୀ କୁଳୋତ୍ତମା, ଶୁଣ, ସଜ୍ଜନର ଦୁର୍ଦ୍ଦିନ କେବଳ ଦୁଇ ଚାରିଦିନ ମାତ୍ର, ଅର୍ଥାତ୍ ଦୀର୍ଘକାଳ ପାଇଁ ନୁହେଁ ।

( ୧୨ )

ସଜଲ ନୟାନ କରି, ପିୟା ପଥ ହେରି ହେରି
ତିଲ ଏକ ହୟ ଯୁଗ ଚାରି
ବିଧି ବଡ଼ ଦାରୁନ, ତାହେ ପୁନ ଐସନ
ହିରହ କୟଲ ମୁରାରି । ୧ ।

ସଜନି ! କିଏ କରବ ପ୍ରତିକାର
କି ମୋର କରମ ଫଲେ, ପିୟ ଗେଲ ଦେସାନ୍ତରେ
ନିତ ନିତ ମଦନ ଟଂକାର । ୨ ।

ନାରିର ଦୀଘ ନିସାସ ପଡ଼ୁକ ତାହାର ପାସ
ମୋର ପିୟା ଯାର ପାସ ବୈସେ ।
ପାଖୀ ଜାତି ଯଦ ହଉଂ, ପିୟା ପାସେ ଉଡ଼ି ଯାଉଂ
ସବ ଦୁଃଖ କହେଁା ତସୁ ପାସେ । ୩ ।

ଅବ୍ଧି ଦେଇ ମୋର ପିଉ, ଲୋଖଲି ହାମାର ଜୀଉ
ତୋ ଲିହ କଇଲା ବାନ ।
ବିଦ୍ୟାପତି କହ, ଧୈରଜ ଧର ଶତେ
ତୁରିତ ହିଁ ମିଲବ କାନ । ୪ ।

---

ଶବ୍ଦାର୍ଥ—(୮) ଦୀଘ=ଦୀର୍ଘ, (୧୦-୧୧) ଯଦି ପକ୍ଷୀ ହୁଅନ୍ତି ତେବେ ପ୍ରିୟତମଙ୍କ ପାଖକୁ ଉଡ଼ି ଯାଆନ୍ତି, ତା ନିକଟରେ ସବୁ ଦୁଃଖ କହନ୍ତି । (୧୨-୧୩) ମୋ ପ୍ରିୟତମକୁ ଆଣି ମୋ ପ୍ରାଣ ରକ୍ଷା କରିପାରିବ ଏଭଳି କୃପାଳୁ କିଏସେ ଅଛି ? (୧୫) ତୁରିତହିଁ=ସତ୍ୱର ହିଁ ।

( ୧୩ )

ହାମ ଧନି ତାପିନୀ ମନ୍ଦିରେ ଏକାକିନୀ
ଦୋସର ଜନ ନାହିଁ ସଙ୍ଗ
ବରଷା ପରବେଶ ପିୟା ଗେଲ ଦୂର ଦେଶ
ରିପୁ ଭେଲ ମତ୍ତ ଅନଙ୍ଗ । ୧ ।
ସ୍ୱଜନି ! ଆଜୁ ସମନ-ଦିନ ହୋୟ
ନବ ଜଲଧର ଚୌଦିକେ ଝାଁପଲ
ହେରି ଜୀଉ ନିକସୟେ ମୋୟ । ୨ ।
ଘନ ଘନ ଗରଜତ ସୁନି ଜୀଉ ଚମକତ
କମ୍ପିତ ଅନ୍ତର ମୋର
ପାପିହା ଦାରୁନ ପିଉ ପିଉ ସୋଙରନି
ଭୁମି ଭୁମି ଦେଇ ତସୁ କୋର । ୩ ।
ବରସିୟେ ପୁନ ପୁନ ଆଗି ଦହନ ଜନୁ
ଜାନଲୁ ଜୀବନ ଅନ୍ତ
ବିଦ୍ୟାପତି କହ ସୁନ ରମଣୀ-ବର
ମିଲବ ତାହୁଁ ଗୁନବନ୍ତ । ୪ ।

---

ଶବ୍ଦାର୍ଥ—(୧) ଲାପିନୀ=ଦୁଃଖିତମ୍ନା, ବିଷଣ୍ଣା, (୨) ଦୋସର=ଦ୍ୱିତୀୟ, (୩) ବରିଷା=ବର୍ଷା, (୫) ସମନ-ଦିନ=ମୃତ୍ୟୁ ଦିବସ, (୬-୭) ଚତୁର୍ଦ୍ଦିଗରେ ନବଜଳଧର ଘୋଟିଲା, ଏହା ଦେଖି ମୋ ପ୍ରାଣ ବାହାରିଲେ ଭଲଅ ହେଉଛି । (୧୦-୧୨) ଜଳାରୁଣ ଗୃହକ ମେଘ କୋଳରେ ବିଚରଣ ପୂର୍ବକ ପିଉ ପିଉ ଶବ୍ଦ କରି, ମୋତେ କାନ୍ତ-କୋଳ ସ୍ମରଣ କରାଇ ଦେଉଛି । ପୁନଃ ପୁନଃ ଅଗ୍ନି ବର୍ଷଣ ସଦୃଶ ମେଘବର୍ଷଣ ହେଉଛି । (୧୩) ଜାନଲୁ=ଜାଣିଲି, (୧୫) ପହୁ= ପ୍ରଭୁ, ନାଥ ।

( ୯୪ )

କତଦିନ ରହବ ମାଧବ ମଥୁରାପୁର
କବେ ଘୁଚବ ବିହି ବାମ ।
ଦିବସ ଲିଖି ଲିଖି, ନଖର ଖୋୟାୟନୁ
ବିଛୁରଲେ ଗୋକୁଲ ନାମ । ୧ ।

ହରି ହରି କାହେ କହବ ଏ ସମ୍ବାଦ
ସୋଙରି ସୋଙରି ଲେହ ଖୀନ ଭେଲ ମଝୁ ଦେହ
ଜୀବନେ ଅଛୟେ କିବା ସାଧ । ୨ ।

ପୂରବ ପିୟାରି ନାରି ହାମ ଅଛଲୁ
ଅବ ଦରସନହୁଁ ସନ୍ଦେହ ।
ଭ୍ରମର ଭ୍ରମରୀ ଭ୍ରମି, ସବହୁଁ କୁସୁମେ ରମି
ନା ତେଜଲ କମଲିନୀ ଲେହ । ୩ ।

ଅସ ମତି ଗଡ଼ କରି, ଜୀଉ କତ ରାଖବ
ଅବହି ଯେ କରତ ପୟାନ ।
ବିଦ୍ୟାପତି କହ ଅସାଧ୍ୟନ ନହ
ଅଓଧିବ ସୋ ବରକାନ । ୪ ।

———

ଶବ୍ଦାର୍ଥ—(୧-୪) ମାଧବ ଆଉ କେତେଦିନ ମଥୁରା-ପୁରରେ ରହିବ ? ବିଧାତାର ପ୍ରତିକୂଳତା କେବେ ଘୁଞ୍ଚିବ ? ଦିନ ଗଣନାର ଅଙ୍କ ଲେଖି ଲେଖି ନଖ ଷୟ ହେଲା ? (କାହ୍ନୁ) କଅଣ ଗୋକୁଳ ନାମଟି ମଧ୍ୟ ବିସ୍ମୃତ ହୋଇଗଲେ । (୫) ହରି ହରି=ଖେଦୋକ୍ତି । କାହେ= କାହାକୁ, (୬) ଯୋଗିବ=ସ୍ମରଣ କର । ଲେହ=ପ୍ରଣୟ, ସ୍ନେହ, (୮) ପିୟାସି=ପ୍ରିୟତମା । (୯) ବର୍ତ୍ତମାନ ଦର୍ଶନ ପାଇବାରେ ମଧ୍ୟ ସନ୍ଦେହ ଜନ୍ମିଲାଣି, (୧୦-୧୧) ଭ୍ରମର ଓ ଭ୍ରମରୀ ପରିଭ୍ରମଣ ପୂର୍ବକ ଯାବତୀୟ କୁସୁମାବଳୀରେ ବିହାର (ରମଣ) କରନ୍ତି, ତଥାପି କମଳିନୀର ପ୍ରୀତିକୁ ବିସ୍ମୃତ କରନ୍ତି ନାହିଁ । (୧୨-୧୩) ଆଶା-ଶୃଙ୍ଖଳାରେ ନିବଦ୍ଧ କରି ଏହି ପ୍ରାଣକୁ କେତେଦିନ ଆଉ ବଞ୍ଚାଇବି ? ଏବେ ପ୍ରାଣ ସିମିତ ହେଲାଣି । (୧୪) ନହ-ହୁଅ ନାହିଁ ।

( ୧୫ )

ମମ ହିମକର-କର　　　　　ତାପେ ତାପାୟଲ
ଭୈଗେଲ କାଲ ବସନ୍ତ ।
କାନ୍ତ କାକ ମୁଖେ　　　　　ନାହି ସମ୍ବାଦଇ
କିସ୍ୱେ କରୁ ମଦନ ଦୁରନ୍ତ । ୧ ।
ଜାନନୁ ରେ ସଖି,　　　　　କୁଦିବସ ଭେଲ
କି ଷନେ ବିହି ମୋରେ ବିମୁଖ ଭେଲ ରେ
ପାଲଟି ଧଠ ନହି ଦେଲ । ୨ ।
ଏତ ଦିନ ଛିନୁ ମୋର　　　　　ସାଧେ ସଧାୟନୁ
ବୁଝନୁ ଅପନ ନିଦାନ ।
ଅବଧିକ ଅସ,　　　　　ଭେଲ ଜବ କାହିମୀ
ଛିଛି ସହ ପାପ-ପରାନ । ୩ ।
ବିଦ୍ୟାପତି କହ　　　　　ମାଧବ ନିକରୁନ
କାହେ ସମୁଝାୟବ ଖେଦ ।
ଇହ ବଡବାନଲ　　　　　ତାପ ଅଧିକ ଭେଲ
ଦାରୁନ ପିୟାକ ବିଚ୍ଛେଦ । ୪ ।

———

ଶବ୍ଦାର୍ଥ—(୧-୩) ସୁସ୍ନିଗ୍ଧ ଚନ୍ଦ୍ରାଲୋକ ମଧ୍ୟ ତାପ-ଦାନ ପୂର୍ବକ ସନ୍ତପ୍ତ କଲା । ବସନ୍ତ ମଧ୍ୟ କାଳ ହୋଇ ପଡ଼ିଲା । କାନ୍ତ ତାଙ୍କ ମୁଖରେ ମଧ୍ୟ ସମ୍ବାଦଟିଏ ପଠାଇଲେ ନାହିଁ । (୪) ଦୁରନ୍ତ ମଦନ ବା କଅଣ ନ କରୁଛି ? (୭) ଦିଠି=ଦୃଷ୍ଟି, (୮-୧୧) ଏତେକାଳ ପର୍ଯ୍ୟନ୍ତ କେବଳ ଆଶାର ଆଶ୍ୱାସନା ବଳରେ ମୁଁ ଦେହରକ୍ଷା କରି ଆସିଲି, କିନ୍ତୁ ଏବେ ଶେଷ ପରିଣାମ ବୁଝିପାରୁଛି । ବିରହର ଅବଧି ଅର୍ଥାତ୍ ବିରହର ଅବସାନ ହେବାର ଆଶା କାହାଣୀରେ ହିଁ ପରିଣତ ହେଲାଣି, ଏ ପାପ-ପ୍ରାଣ ଆଉ କେତେ ଅବା ସହିବ ? (୧୨-୧୫) ବିଦ୍ୟାପତି କହନ୍ତି—'ମାଧବ ନିର୍ଦ୍ଦୟ'. ଭେଦ ବୁଝାଇବ କାହାକୁ । ପ୍ରିୟତମର ବିଚ୍ଛେଦ-ତାପ ଯେ ସମୁଦ୍ରାଗ୍ନି ଠାରୁ ମଧ୍ୟ ଦାରୁଣତର ହେଲା ।

( ୨୭ )

ଫୁଟିଲ କୁସୁମ ବନ କୁଞ୍ଜ କୁଟିର ବନ
କୋକିଲ ପଞ୍ଚମ ଗାୟେ, ରେ ।
ମଲୟାନିଲ ହିମଶିଖର ସିଧାରଲ
ପିୟା ନିଜ ଦେସ ନ ଆବେ, ରେ । ୧ ।
ଚନ୍ଦନ ଚନ୍ଦ ତନ ଅଧିକ ଉତାପଏ
ଉପବନ ଅଲି ଉତରେଲେ, ରେ ।
ସମୟ ବସନ୍ତ କନ୍ତ ରହୁ ଦୂର ଦେସ
ଜାନଲ ବିହି ପ୍ରତିକୂଲେ, ରେ । ୨ ।
ଅନମିଖ ନୟନ ନାହ ମୁଖ ନିରଖଇତ
ତିରପିତ ନ ଭେଲ ନୟାନେ, ରେ ।
ଈ ସୁଖ ସମୟ ସହଏ ଏତ ସଙ୍କଟ
ଅବଲା କଠିନ ପରାନେ, ରେ । ୩ ।
ଦିନ ଦିନ ଖିନ ତନୁ ହିମ କମଳିନି ଜନୁ
ନ ଜାନି କି ଜିବ ପରଜନ୍ତ, ରେ ।
ବିଦ୍ୟାପତି କହ ଧିକ ଧିକ ଜୀବନ
ମାଧବ ନିକରୁନ କନ୍ତ, ରେ । ୪ ।

— — —

ଶବ୍ଦାର୍ଥ—(୧) ଫୁଟଲ୍ = ଫୁଟିଲା, (୩) ସିଧାରଲ୍ = ପ୍ରବେଶ କଲା, (୭) ଉଚବୋଲ = ଉଚ୍ଚବୋଲ, ହୁଁକାର = ଉଚ୍ଚଶବ୍ଦ, (୯) ନାହ = ନାଥ, (୧୦) ଭରପିତ = ପରିତୃପ୍ତ, (୧୪) ଜାଣେ ନାହିଁ ଏହା ହେଉଛି ଶେଷ ନା ଅଉ କିଛି ହେବାର ଅଛି, (୧୬) ନିକରଣ = ନିଷ୍କରୁଣ, କଂତ = କାନ୍ତ ।

( ୫୭ )

ଫୁଟଲ କୁସୁମ ସକଲ ବନ ଅଂତ
ମିଲଲ ଅବ ସଖି ସମୟ ବସଂତ ।
କୋକିଲ କୁଳେ କଳରବ ହି ବିଥାର
ପିୟା ପରଦେଶ, ହାମ ସହଲ୍ଲ ନା ପାର । ୧ ।
ଅବ ଯଦି ଯାଇ ସମ୍ବାଦଇ କାନ
ଅର୍ଚ୍ଚିବ ଐସେ ହାମାର ମନ ମାନ ।
ଇହ ସୁଖ ସମୟେ ଯୋହ ମଝୁ ନାହ
କା ସନେ ବିଲସବ କୋ କବ ତାହ ? । ୨ ।
ତୁହ ଯଦି ଇହ ସୁଖ କହ ତସୁ ଠାମ
ବିଦ୍ୟାପତି କହେ ପୂରବ କାମ ।

———

ଶବ୍ଦାର୍ଥ—(୧) ସକଳ ବନାନ୍ତରେ କୁସୁମ ଫୁଟିଲା । (୩) ବିଥାର = ବିସ୍ତାର, (୫-୬) ଏବେ ଯଦି କାହ୍ନୁ ପାଖକୁ ଯାଇ ସମ୍ବାଦ ଦିଅନ୍ତି, ତେବେ ସେ ଅସି ଯାଆନ୍ତା ବୋଲି, ମୋ ମନରେ ପ୍ରତ୍ୟୟ ଜନ୍ମୁଛି । (୭-୮) ଏହି ସୁଖମୟ କାଳରେ ନାଥ ମୋର କାହା ସଙ୍ଗରେ ବିଳାସ କରିବ ? ତାକୁ ବା ସମ୍ବାଦ ଦେବ କିଏ ? (୯) ତସୁ ଠାମ = ତା ସ୍ଥାନରେ, ତା ଅଗରେ ।

( ୫୮ )

ହାମ ଅଭାଗିନୀ ଦୋସର ନାହି ଭେଲା ।
କାନୁ କାନୁ କରତ ଜନମ ବହି ଗେଲା ॥

ଅଙ୍କୁର କରି'ମୋର ପିଯା ଚଲି ଗେଲା
ପ୍ରତିବେଶୀ ଯତ ଶୂନ ବସବିତ ଭେଲା । ୧ ।
ମନେ ମୋର ଯତ ଦୁଃଖ କହବ କାହାକେ
ତ୍ରିଭୁବନେ ଏତ ଦୁଃଖ ନାହିଁ ଜାନେ କେକେ ।
ଭନୟେ ବିଦ୍ୟାପତି ସୁନ ଧନୀ ରାଇ
କାନୁ ସମହାଇତେ ହାମ ଚଲି ଯାଇ । ୨ ।

———

ଶବ୍ଦାର୍ଥ—(୧) ଦୋସର = ଦ୍ୱିତୀୟ, ସଙ୍ଗୀ, (୪) ବିସବିତ = ବିସ୍ମୃତ ।

( ୧୯ )

ସଖି ହେ ହମର ଦୁଖକ ନହି ଓର
ଇ ଭର ବାଦର ମାହ ଭାଦର
ଶୂନ୍ୟ ମନ୍ଦିର ମୋ'ର । ୧ ।
ଝାଂପି ଘନ ଗରଜଂତି ସନ୍ତତ
ଭୁବନ ଭରି ବରସନ୍ତିୟା ।
କାନ୍ତ ପାହୁନ କାମ ଦାରୁନ
ସଘନ ଖର ଶର ହଂତିୟା । ୨ ।
କୁଲିଶ କତ ଶତ ପାତ ମୁଦିତ
ମୟୂର ନାଚତ ମାତିୟା ।
ମତ୍ତ ଦାଦୁର ଡାକ ଡାହୁକ
ଫାଟି ଯାୟତ ଛାତିୟା । ୩ ।
ତିମିର ଦିଗ ଭରି ଘୋର ଯାମିନୀ
ଅଥିର ବିଜୁରିକ ପାଁତିୟା ।
ବିଦ୍ୟାପତି କହ କଇସେ ଗମାଓବ
ହରି ବିନା ଦିନ ରାତିୟା । ୪ ।

———

ଶବ୍ଦାର୍ଥ—(୧) ଦୁଃଖିକ=ଦୁଃଖର । ଓର=ସୀମା । (୨) ବାଦର=ମେଘ, ମାହ=ମାସ, ଭାଦର=ଭାଦ୍ରବ ମାସ, (୪) ସନ୍ତତ=ସତତ, ସର୍ବଦା, ପ୍ରାହୁଣ=ପର ଗୃହରେ ଅତିଥି । (୭) ହନ୍ୟ୍ୟା=ହାଣି, ଆଘାତ କରି, (୧୦) ଦାଦୁରୀ=ବେଙ୍ଗୁଲି, (୧୩) ବିଦ୍ୟୁତ୍ ପଂକ୍ତି ଏତେ ଘନ ଘନ ପରିଦୃଷ୍ଟ ହେଉଛି ଯେ ମନେ ହେଉଛି, ତାହା ଯେପରି ଅଚଞ୍ଚଳ, ଅର୍ଥାତ୍ ସ୍ଥିର ଅଟେ, ଗମାଓବ=ଯାପନ କରିବୁ । (୧୫) ସଁତସ୍ଥା=ରବ ।

( ୬୦ )

ସଜନୀ, କେ କହ ଆଓବ ମଧାଇ
ବିରହ-ପୟୋଧି ପାର କିଏ ପାଓବ
ମଝୁ ମନ ନହି ପତିଆଇ । ୧ ।
ଏଖନ ତଖନ କରି ଦିବସ ଗମାଓଲ
ଦିବସ ଦିବସ କରି ମାସା ।
ମାସ ମାସ କରି ବରସ ଗମାଓଲ
ଛୋଡ଼ଲୁଁ ଜୀବନ ଆସା । ୨ ।
ବରସ ବରସ କରି ସମୟ ଗମାଓଲ
ଖୋୟଲୁଁ କାନୁକ ଆସେ ।
ହିମକର-କିରନ ନଳିନୀ ଯଦି ଜାରବ
କି କରବ ମାଧବ ମାସେ । ୩ ।
ଅଂକୁର ତପନ-ତାପ ଯଦି ଜାରବ
କି କରବ ବାରିଦ ମେହେ ।
ଇହ ନବ ଯୌବନ ବିରହ ଗମାଓବ
କି କରବ ସେ ପିୟା ଗେହେ । ୪ ।
ଭନଇ ବିଦ୍ୟାପତି ସୁନ ବର ଯୌବତି
ଅବ ନହି ହୋଇ ନିରାସେ ।
ସେ ବ୍ରଜ-ନନ୍ଦନ ହୃଦୟ ଆନନ୍ଦନ
ଝଟିତି ମିଲବ ତୁଅ ପାସେ । ୫ ।

———

ଶବ୍ଦାର୍ଥ—(୩) ପଞ୍ଚଅରି=ବିଶ୍ୱାସ ହୁଏ । (୬) ବରଷ=ବର୍ଷ (୯) ଏତେକାଳ ଅଶାରେ ହିଁ କ୍ଷେପଣ କରିଦେଲି । (୧୦-୧୧) ଚାତ୍ରକାରଣରେ ହିଁ ଯଦି ନଳନୀ ଦଗ୍ଧୀଭୂତା ହୁଏ ତେବେ ବସନ୍ତ ଋତୁରେ ତାର ଗତି କଅଣ ହେବ । (୧୨-୧୩) ଯଦି ଅଙ୍କୁର ତପନ-ତାପରେ ଜଳିଯାଏ, ତେବେ ଜଳଦାତା ମେଘ ଆଉ କରିବ କଅଣ ? (୧୫) ନେହ=ସ୍ନେହରେ ।

( ୬୧ )

ଅଂକୁର ତପନ ତାପ ଯଦି ଜାରବ
କି କରବ ବାରିଦ ମେହ ।
ଈ ନବ ଯୌବନ ବିରହ ଗମାଓବ
କି କରବ ସେ ପିୟା ଗେହ । ୧ ।
ହରି ହରି କେ ଇହ ଦୈବ ଦୁରସା
ସିନ୍ଧୁ-ନିକଟ ଜଦି କଂଠ ସୁଖାୟବ ।
କୋ ଦୂର କରବ ପିୟାସା । ୨ ।
ଚଂଦନ-ତରୁ ଜବ ସୌରଭ ଛୋଡବ
ସସଧର ବରଖିବ ଆଗି ।
ଚିନ୍ତାମଣି ଜବ ନିଜ ଗୁନ ଛୋଡବ
କୋ ମୋର କରମ ଅଭାଗି । ୩ ।
ସାଓନ ମାହ ଘନ-ବିନ୍ଦୁ ନ ବରଖିବ
ସୁରତରୁ ବାଁଝ କି ଛାଁଦେ ।
ଗିରିଧର ସେବି ଠାମ ନହି ପାଏବ
ବିଦ୍ୟାପତି ରହୁ ଧାଁଦେ । ୪ ।

———

ଶବ୍ଦାର୍ଥ—(୬) ସୁଖାଏବ=ଶୁଷ୍କ ହେବ, (୬) ପିୟାସା=ପିପାସା, ବରଖବ=ବର୍ଷଣ କରିବ, (୧୨) ମାହ=ମାସ, (୧୩) କଳ୍ପତରୁ ଯଦି ବନ୍ଧ୍ୟାବତ୍ ନିଷ୍ଫଳ ହୁଏ । (୧୪) ଠାମ=ସ୍ଥାନ, (୧୫) ବିଦ୍ୟାପତି ସଂଶୟାକୁଳ ହୋଇ ରହୁଛି ।

( ୨୨ )

କୁସୁମିତ କାନନ ହେରି କମଲ ମୁଖି
　　　　　　　ମୁଦି ରହଏ ଦୁ ନୟାନ ।
କୋକିଲ କଲରବ ମଧୁକର ଧୁନି ସୁନି
　　　　　　　କର ଦେଇ ଝାଁପଇ କାନ । ୧ ।
ମାଧବ, ସୁନ ସୁନ ବଚନ ହମାର
ତୁଅ ଗୁନ ସୁନ୍ଦରି ଅତି ଭେଲ ଦୁବରି
　　　　　　　ଗୁନି ଗୁନି ପ୍ରେମ ତୋହାରି । ୨ ।
ଧରନି ଧନି ଧରି କତ ବେରି ବଇସଇ
　　　　　　　ପୁନ ତହିଁ ଉଠଇ ନ ପାରି ।
କାତର ଦିଠି କରି ଚୌଦିସ ହେରି ହେରି
　　　　　　　ନୟନ ଗଲଏ ଜଲଧାରି । ୩ ।
ତୋହରି ବିରହ ଦିନ ଛିନ ଛିନ ତନୁ ଛିନ
　　　　　　　ଚୌଦିସ ଚାଁଦ ସମାନ ।
ଭନଇ ବିଦ୍ୟାପତି ସିବସିଂଘ ନରପତି
　　　　　　　ଲଖିମା ଦେଇ ପରମାନ । ୪ ।

---

ଶବ୍ଦାର୍ଥ—(୧) ଝାଁପଇ=ଆବୃତ କରି, ଝାଁପିକି, (୨) ଦୁବରି= ଦୁର୍ବଳା, (୧୩) କୃଷ୍ଣପକ୍ଷ ଚତୁର୍ଦ୍ଦଶୀର ଚନ୍ଦ୍ରବତ୍ ।

( ୨୩ )

ଯନ୍ହୁଁକ ବିରହ ଡରେ ଚୀର ଚନ୍ଦନ
　　　　　　ଉରେ ହାର ନା ଦେଲ ।
ସୋ ଅବ ନଦୀ ଗିରି ଆଁତର ଭେଲ । ୧ ।
ପିୟାକ ଗରବେ ହାମ କାହୁକ ନା ଗନଲ
ସୋ ପିୟା ବିନା ମୋହେ କୋ କି ନା କହଲ ।
　　　　　　ବଡ଼ ଦୁଃଖ ରହଲ ମରମେ
ପିୟା ବିସୁରଲ ଯଦି, କି ଆର ଜୀବନେ । ୨ ।

ପୂରବ ଜନମେ ବିହି ଲିଖଲ ଭରମେ
ପିୟାକ ଦୋଖ, ନାହିଁ ଯେ ଛିଲ କରମେ ।
ଆନ ଅନୁରାଗେ ପିୟା ଆନ ଦେଶେ ଗେଲ
ପିୟା ବିନା ପାଁଜର ଝାଁଝର ଭେଲ । ୬ ।
ଭନଯେ ବିଦ୍ୟାପତି ସୁନ ବରନାରି
ଧୈରଜ ଧରହ ଚିତେ ମିଳବ ମୁରାରି ।

---

ଅର୍ଥ—(୧-୩) ଯାହାର ବିରହ ଭୟରେ ଚୀର, ଚନ୍ଦନ ଓ ହାରକୁ ମୁଁ ବକ୍ଷସ୍ଥଳରେ ଦେଇ ନ ଥିଲି. ସେ ଏବେ ନଦୀ ଓ ଗିରିର ଅନ୍ତରରେ ଅବସ୍ଥିତ, ( ଅର୍ଥାତ୍ କାନ୍ତର ଉପସ୍ଥିତି ସମୟରେ ତାଙ୍କ ଓ ମୋର ବକ୍ଷ ମଧ୍ୟରେ କାଳେ ଅଣୁମାତ୍ର ବ୍ୟବଧାନ ପରିଦୃଷ୍ଟ ହୋଇଯିବ. ଏହି ଭୟରେ ମୁଁ ବସ୍ତ୍ର, ଚନ୍ଦନ ଓ ହାରକୁ ମଧ୍ୟ ବକ୍ଷସ୍ଥଳରେ ରଖୁ ନ ଥିଲି. ଅଥଚ ବର୍ତ୍ତମାନ ଆମ୍ଭ ଦୁହିଙ୍କ ମଧ୍ୟରେ ବହୁ ତଟିନୀ ଓ ପର୍ବତର ବ୍ୟବଧାନ ରହିଛି ) (୪-୫) ପ୍ରିୟତମ ପାଇଁ ମୁଁ ଗର୍ବିତା ହେଉଥିଲି, କାହାରିକୁ ଗଣୁ ନ ଥିଲି । ( ଅର୍ଥାତ୍ କାହାରିକୁ ଖାତିର କରୁ ନ ଥିଲି ) ସେହି ପ୍ରିୟତମର ବିଚ୍ଛେଦ ବେଳେ ମୋତେ କିଏ ବା କଅଣ ନ କହୁଛି ? (୮-୯) ପୂର୍ବଜନ୍ମରେ ଭ୍ରାନ୍ତ ନିବନ୍ଧନ ବିଧାତା ଲେଖିଥିଲେ ଯେ ପ୍ରାଣନାଥ-ସନ୍ଦର୍ଶନ ଘଟିବ କିନ୍ତୁ ମୋ କର୍ମଫଳ ହେତୁ ଏହା ଘଟିଲା ନାହିଁ । (୧୧) ପ୍ରିୟତମ ବିରହରେ ଅସ୍ଥି-ପଞ୍ଜର ଜର୍ଜରିତ ହେଲାଣି ।

( ୨୪ )

ମାଧବ ଅବଲା ଦେଖିନ୍ ମତିହୀନା
ସାରଙ୍ଗ ସବଦ ମଦନ ଅତି କୋପିତ
ତାର ଦିନେ ଦିନେ ଭେଲ ଖୀନା । ୧ ।
ରହତି ବିଦେସ ସନ୍ଦେସ ନା ପଠାୟସି
କୈସେ ଜାବଯେ ବ୍ରଜବାଲ ।
ସେ ହେନ ସୁନ୍ଦରୀ ରୂପେ ଗୁନେ ଆଗରି
ଜାଗଲ ବିରହ ବିସ ଜ୍ୱାଲ । ୨ ।

ଜିବ ବିନୁ ସେଜ ପରଶ ନାହି ପାରଇଁ
ସୋଇ ଲୁଠତି ମହୀଠାମେ ।
ପୂନମିକ ଚାଁଦ ଟୁଟି ପଡ଼ଲ ଜନୁ
ଚାମର ଚମ୍ପକ ଦାମେ । ୩ ।

ସୋଇ ଅବଧି ଦିନ ବହୁ ଅସୋୟା
ତୈ ଧନୀ ସଁଖତି ପରାନେ ।
ଭନୟେ ବିଦ୍ୟାପତି ନିକରୁନ ମାଧବ
ସୁନଇତେ ହବଲ ଗିଆନେ । ୪ ।

---

ଅର୍ଥ—ମାଧବ । ଅବଳାକୁ ବୁଦ୍ଧିମ୍ଭାନା ଦେଖିଲ, କୋକିଳ-କୂଜନ ( ବା ଭ୍ରମର-ଗୁଞ୍ଜନ ) ଶୁଣିଲେ, ତାର କାମୋଦ୍ଦୀପନ ଘଟୁଛି, ତେଣୁ ସେ ଦିନକୁ ଦିନ କ୍ଷୀଣା ହେଉଛି । ବିଦେଶରେ ରହି, ତୁ ସଂବାଦ ମଧ୍ୟ ପଠାଉନାହୁଁ. ବ୍ରଜବାଳାଗଣ ବଞ୍ଚିବେ କିପରି ? ତା ସଦୃଶ ରୂପ-ଗୁଣରେ ଶ୍ରେଷ୍ଠା ସୁନ୍ଦରୀକୁ ଏବେ ବିରହ-ବିଷର ଜ୍ୱାଳା ଜର୍ଜରିତା କରୁଛି । ଯେ ( ତୋର ) ବକ୍ଷସ୍ଥଳ ବ୍ୟତୀତ ଅନ୍ୟ ଶଯ୍ୟା ସ୍ପର୍ଶ କରିପାରୁ ନ ଥିଲା । ଏବେ ସେ ଭୂଲୁଣ୍ଠିତା । ଯେପରି କି ପୂର୍ଣ୍ଣିମାର ଚନ୍ଦ୍ର ବିଶ୍ଳିଷ୍ଟ ଚମ୍ପକ-ଦାମରେ ଖସି ପଡ଼ୁଛି, ଅର୍ଥାତ୍ ସୁନ୍ଦରୀ, କରତଳରେ କପୋଳ ବିନ୍ୟସ୍ତ କରି ରହିଛି । ( ଏହି ରୂପକରେ କରାଙ୍ଗୁଳି ସ୍ଥାନ ହେତୁ ଚମ୍ପକଦାମ ଓ ମୁଖ ପୂର୍ଣ୍ଣଚନ୍ଦ୍ର ) ସେହି ସୁନ୍ଦରୀ ବହୁ ଆଶ୍ୱାସନା ପ୍ରଦାନ ଫଳରେ ଅଧିକ ଦିନ ପର୍ଯ୍ୟନ୍ତ ଜୀବନ ଧାରଣ କରିଛି । ବିଦ୍ୟାପତି କହନ୍ତି ଯେ ନିଷ୍କରୁଣ ମାଧବ ଏହି ବିବରଣୀ ଶୁଣି ଜ୍ଞାନହରା ହେଲା ।

( ୬୪ )

କାଲିକ ଅବଧି କରିୟା ପିୟା ଗେଲ
ଲିଖଇତେ କାଲି ଭୀତ ଭରି ଗେଲ ।
ଭେଲ ପରଭାତ ପୁଛଇଁ ସବହୁଁ
କହ କହ ରେ ସଖି କାଲି କବହୁଁ । ୧ ।

ଭାଲି ଭାଲି କରି ଦେଖକୁ ଅସ
ଭାନ୍ତ ନିତାନ୍ତ ନା ମିଲଲ ପାସ ।
ଭନଯେ ବିଦ୍ୟାପତି ସୁନ ବରନାରି
ପୁରି ରମଣୀ ଗନ ଗଣଇ ବାରି । ୨ ।

---

ଅର୍ଥ—ପ୍ରିୟତମ 'କାଲି' ପର୍ଯ୍ୟନ୍ତ ଆସିବାର ସମୟ ସ୍ଥିର କରି ଗଲେ । 'କାଲି' ଏହି କହିଛି ବାରମ୍ବାର ଲେଖି ଲେଖି ପ୍ରାଚୀର ପରିପୂର୍ଣ୍ଣ ହୋଇଗଲା । ପ୍ରଭାତ ହେଲା, ସମସ୍ତଙ୍କୁ ପଚାରିଲି, କହ, କହ ଲୋ ସଖି ! 'କାଲି' କେବେ ହେବ ? "କାଲି" "କାଲି" କରି ଆଶା ପରିତ୍ୟାଗ କରିବାକୁ ହେଲା । କାନ୍ତ ସମୀପକୁ ଆସି, ଆଦୌ ମିଳିତ ହେଲେ ନାହିଁ । ବିଦ୍ୟାପତି ଭଣନ୍ତି—"ଶୁଣ ନାରୀଶ୍ରେଷ୍ଠା ! ପୁରନାରୀମାନେ ତାକୁ ବାରଣ କରି ଅଟକାଇ ରଖି ନେଲେ ।

( ୬୭ )

ପ୍ରେମକ ଗୁନ କହଇ ସବ କୋଇ
ଯେ ପ୍ରେମେ କୁଲବତୀ କୁଲଟା ହୋଇ ।
ହାମ ଯଦି ଜାନିଏ ପିରିତି ଦୁରନ୍ତ
ତବ କିଏ ଯାୟବ ପାପକ ଅନ୍ତ ! ୧ ।
ଅବ ସବ ବିଷ ସମ ଲଗଏ ମୋଇ
ହରି ହରି ପୀରିତି କରଇ ଜନି କୋଇ ।
ବିଦ୍ୟାପତି କହେ ସୁନ ବରନାରି
ପାନି ପିଏ ପିଛେ ଜାତି ବିଚାରି । ୨ ।

---

ଅର୍ଥ—ଯେଉଁ ପ୍ରେମରେ କୁଲବତୀ ରମଣୀ ମଧ୍ୟ କୁଳଟା ହୋଇଯାଏ, ସେହି ପ୍ରେମର ଗୁଣବର୍ଣ୍ଣନା ସମସ୍ତେ କରନ୍ତି । ମୁଁ ଯଦି ପ୍ରୀତିର ଦୁରନ୍ତ ସ୍ୱରୂପ ପ୍ରଥମରୁ ଜାଣି ପାରିଥାନ୍ତି, ତେବେ କିଏ ତାର ପାପ-ପରିସର ମଧ୍ୟରେ ପଦକ୍ଷେପ କରିଥାନ୍ତା ? ବର୍ତ୍ତମାନ ମୋତେ ସବୁ ବିଷବତ୍ ବୋଧ ହେଉଛି ହରି, ହରି ( ଆକ୍ଷେପୋକ୍ତି ) କେହି ଯେପରି

ପ୍ରୀତି ନ କରୁ । ବିଦ୍ୟାପତି କହନ୍ତି—ସୁନ୍ଦରୀ ! ଶୁଣ, ପ୍ରଥମରେ ପାଣି ପିଇ ସାରି ପରେ ଜାତି ବିଗୃହ କପରି ?।

( ୬୭ )

କତ ଗୁରୁ-ଗଞ୍ଜନ ଦୁରଜନ ବୋଲ
ମନେ କରୁ ନାଗନଲ୍ ଓ ରସେ ଭୋଲ ।
କୁଲକା-ଗ୍ରିତ ଛୋଡ଼ଲ୍ ଯସୁ ଲଗି
ସୋ ଅବ ବନୁରଲ୍ ହାମାର ଅଗାଗି । ୧ ।
ସୋଙରି ସୋଙରି ସଖି କହଣ ମୁରାରି
ସୁପୁରୁଖ ପରିହରେ ଦୋଷ ବିଗୃରି ।
କୋ ପୁନ ସହଚରି ହୋୟ ମଡମାନ
କରୟେ ପିସୁନ ବଚନ ଅବଧାନ । ୨ ।
ନାରୀ ଅବଲ ହାମ କି ବୋଲବ ଆନ
ତୁହୁଁ ରସନାନନ୍ଦା ଗୁନକ-ନିଧାନ ।
ମଧୁର ବଚନେ ଅବ କାନୁ ବୁଝାଇ
ଏହ କର ଦେଖି ରୋଷ ଅବଗାଇ । ୩ ।
ତୁହୁ ବର ଚତୁରୀ ହାମ କପ୍ୟେ ଜାନ
ଭନୟେ ବିଦ୍ୟାପତି ଇହ ରସ ଗାନ ।

---

ଅର୍ଥ—କାହ୍ନୁଙ୍କ ପ୍ରେମରସରେ ବିହ୍ୱଳା ହୋଇ ମୁଁ ଗୁରୁଜନଙ୍କର କେତେ ଗଞ୍ଜଣା ଓ ଦୁର୍ଜନମାନଙ୍କର କି ନିନ୍ଦା ବା ନ ସହୁଛି ? କିନ୍ତୁ ଏହି ସବୁକୁ ମୁଁ ଗଣନାରେ ଆଣି ନାହିଁ । ଯାହା ପାଇଁ କୌଳିକ ସ୍ରୀତି ତ୍ୟାଗ କଲି, ସେ ଏବେ ମୋର ସାହଚର୍ଯ୍ୟ ପରିତ୍ୟାଗ କରୁଛି । ସଖି ! ମୁରାରିଙ୍କ ସ୍ମରଣ କରିକି କହିବୁ । ସୁପୁରୁଷ ଦୋଷ ବିବେଚନା ପୂର୍ବକ (ନାଟଶ୍ରେକ୍ତ) ପରିହାର କରେ । ସହଚରି ! ମତିମାନ ନାଗର, ପୁଣି ପିଶୁନବଚନ ଅର୍ଥାତ୍ ଦୁର୍ଜନର ଗ୍ଲାନି ସୂଚକ ବାକ୍ୟ ପ୍ରତି ମଧ୍ୟ ପ୍ରଣିଧାନ କରିଥାଏ ? । ମୁଁ ଅବଳାନାରୀ, ଅଜ ବିଶେଷ କଅଣ କହିବି ? ତୁ ତ ସ୍ୱୟଂ ରସନାନନ୍ଦା ( ବାକ୍ ପଟୀୟସୀ ) ଓ ଗୁଣନିଧାନା , ମଧୁର ବଚନ ଦ୍ୱାରା କାହ୍ନୁଙ୍କୁ ବୁଝାଇ ତାର ରୋଷ-ପ୍ରଶମନ କର ତ ଦେଖେଁ ! ତୁ

ଶ୍ରେଷ୍ଠ ଚତୁର୍ଥ । ମୁଁ ବା ଜାଣେ କିଣ ? ବିଦ୍ୟାପତି ଏହି ରସ-ଗାନକୁ ଭଣନ୍ତି ।

(୨୮)

ଲୋଚନ ଲୋରେ ତଟିନୀ ନିରମାନ
ତହିଁ କମଲ-ମୁଖୀ କରଇ ସିନାନ ।
ବେରି ଏକ ମାଧବ ତୁୟା ସଇ ଜୀବଇ
ଜବ ତୁୟା ରୂପ ନୟନ ଭରି ପୀବଇ । ୨ ।

ଫୁଟୁଲ କବରୀ ଓଲଟି ଉରେ ପଡଇ
ଜନୁ କନକ ଗିରି ଭ୍ରମର ଚରଇ ।
ତୁୟ ଗୁନ ଗନଇତେ ନିନ୍ଦ ନା ହୋୟ
ଅବନତ ଆନନେ ଧନୀ କତ ରୋୟ । ୧ ।

ଭନୟେ ବିଦ୍ୟାପତି ସୁନ ବର କାନ
ବୁଝନୁ ତୁୟା ହିୟା ଦାରୁନ ପାଷାନ ।

---

ଶବ୍ଦାର୍ଥ— (୧) ଲୋଚନ ଲୋରେ = ନୟନ ନୀରରେ । (୩—୪) ମାଧବ, ଥରେ ତୋର ରୂପ ଆଖି ପୂରାଇ ( ନୟନ ଭରି ) ପାନ କରି ପାରିଲେ, ( ଅର୍ଥାତ୍ ଦର୍ଶନ କରି ପାରିଲେ ) ସଇ ତୋର ବଞ୍ଚିପାରେ । (୪—୫) ତାର ଅଲୁଲାୟିତା କବରୀ ଓଲଟି ବକ୍ଷ ଉପରେ ପଡ଼ୁଛି, ଯେପରି କନକ ଗିରିରେ ଭ୍ରମର ସଞ୍ଚରଣ କରୁଛି । (୭) ନିନ୍ଦ—ନିଦ । (୮) ରୋୟ = କାନ୍ଦେ, (୧୦) ହିୟା = ହୃଦୟ ।

(୨୯)

ମନେ ରହଲ ନା ଛୁଟିବ ଲେହା
ସୁଜନକ ପୀରିତି ପାଷାନକ ରେହା ।
ତାହେ ଭେଲ ଅତି ବିପରୀତ
ନା ଜାନିୟେ ଐସନ ଦୈବ ଘଟିତ । ୧ ।

ଏ ସଖି କହବ କହୁରେ କରଯୋଡ଼ି
ବିଫଲ ପ୍ରେମକ ଅଁକୁର ମୋଡ଼ି ।
ଯଦି କହ ତୁହୁଁ ଅଗେୟାନୀ
ଦାସି ସୌଁପନୁ ହୃଦୟ ନିଜ କରେ ଜାନି । ୨ ।
ବିଦ୍ୟାପତି କହେ ଲାଗଲି ଧନ୍ଦା
ଯା କର ପୀରିତି ସୋ ଜନ ଅନ୍ଧା ।

---

ଶବ୍ଦାର୍ଥ—(୧-୨) ମନରେ ନିଶ୍ଚୟ ଥିଲି ଯେ କେବେହେଲେ ପ୍ରଣୟ ଭଙ୍ଗ ଘଟିବ ନାହିଁ, ( ଯେ ହେତୁ ) ସୁଜନର ପ୍ରେମ ପାଷାଣ ରେଖା ତୁଲ୍ୟ । (୪) ଏଭଳି ଦୈବ-ଘଟନ ମୋତେ ଜଣା ନ ଥିଲା । (୬) ପ୍ରେମାଙ୍କୁରକୁ ବିନଷ୍ଟ କରିବା ବିଫଳ ଅଟେ । (୭-୮) ଯଦି ସେ ମୋତେ ଜ୍ଞାନହୀନା ବୋଲି କହିବ, ତେବେ ତାଙ୍କୁ ଜଣାଇବି ଯେ ମୁଁ ଆପଣାର ଦାସୀ, ହୃଦୟ ସମର୍ପଣ କରିଥିଲି । (୯-୧୦) ବିଦ୍ୟାପତି କହନ୍ତି—ମୋତେ ସଂଶୟ ବୋଧ ହେଉଛି, ପ୍ରୀତି ଯାହାର ସେ ଅନ୍ଧ ।

( ୩୦ )

ସଜନୀ କାନୁକ କହବ ବୁଝାଇ
ରୋପି ପେମକ ବୀଜ ଅଂକୁର ମୋଡ଼ଲି,
ବାଁଢବ କୌନ ଉପାଇ । ୧ ।

ତେଲ-ବିନ୍ଦୁ ଜୈସେ ପାନି ପସାରଏ
ଐସନ ମୋର ଅନୁରାଗ ।
ସିକତା ଜଲ ଜୈସେ ଛନହି ସୁଖଏ
ତୈସନ ମୋର ସୁହାଗ । ୨ ।

କୁଲ-କାମିନୀ ଛଲୌଁ କୁଲଟା-ଭଏ ଗେଲୌଁ
ତିନ କର ବଚନ ଲୋଭାଇ ।
ଅପନେ କର ହମ ମୂଡ଼ଁ ମୁଡାୟଲ
କାନୁ ସେ ପ୍ରେମ ବଢ଼ାଇ । ୩ ।

ଗ୍ଲୌବ ରମଣି ଜନ-ମନ ମନ ଗ୍ଲୋଅଇ
ଅମ୍ବର ବଦନ ଛୁପାଇ ।
ଦୀପକ ଲୋଭ ସଲଭ ଜନି ଧାଏଲ
ସେ ଫଲ ଭୁଞିଇଛ ଗୁଇ । ୪ ।
ଭନଇ ବିଦ୍ୟାପତି ଇହ କଲିଯୁଗ ରୀତି
ଚିନ୍ତା କରହ ନ କୋଇ ।
ଅପନ କରମ ଦୋଷ ଅପହି ଭୁଂଜଇ
ଜେ ଜନେ ପରବସ ହୋଇ । ୫ ।

---

ଶବ୍ଦାର୍ଥ—(୩) ଉ୍ପାଇ=ଉପାୟରେ । (୪-୫) ପାଣିରେ ତୈଳ-ବିନ୍ଦୁ ସଦୃଶ ( ତାଙ୍କ ପ୍ରତି ) ମୋର ଉଦାର ଅନୁରାଗ । (୯) ଲୋଭାଇ=ଲୋଭରେ । (୧୦) ମୁଁଡ ମୁଡାଏଲ=ମସ୍ତକ ମୁଣ୍ଡନ କଲି ଅର୍ଥାତ୍ ସର୍ବସ୍ୱାନ୍ତ ହେଲି । (୧୩) ବସନରେ ମୁଖ ଲୁଚାଇ । (୧୪) ସଲଭ=ପତଙ୍ଗ । (୧୫) ସେହିପରି ଫଳଭୋଗ ବାଞ୍ଛିମାନ୍ତି ।

( ୩୧ )

ହାମ ଅବଲା ଦୁଃଖ ସହନେ ନା ପାୟ
ବିରହ ଦାରୁନ ଦୁଜେ ମଦନ ସହାୟ ।
କୋକିଲ କଲରବେ ମତ୍ତ ଭେଲ ଭୋର
କିହ ଜନି ସଜନି କୋନ ଗତି ମୋର । ୧ ।
ପହିଲ ବୟସ ମୋର ନା ପୂରଲ ସାଧେ
ପରିହରି ଗେଲ ପିୟା କୋନ ଅପରାଧେ ।
ଯୌବନ ସଖୀର କରମ କୟେ ଭେଲ
ବିଦ୍ୟାପତି କହ ହବେ ପୁନ ମେଲ । ୨ ।

---

ଶବ୍ଦାର୍ଥ—(୨) ପ୍ରଥମତଃ ବିରହ ଦୁଃଖଟା ଦାରୁଣ, ଦ୍ୱିତୀୟତଃ ମଦନ ତାର ସହାୟ । (୩) ଭୋର=ବିହ୍ୱଳ । (୭) ଏଭଳି ସଖୀର କର୍ମ ହେଲା ବା କଅଣ ? ।

(୩୨)

ନାହ ଦରସ ସୁଖ ବିହି କୈଲ ବାଦ
ଅଁକୁରେ ଭାଙ୍ଗଲ ବିନ ଅପରାଧ ।
ସୁଖମୟ ସାଗର ମରୁଭୂମି ଭେଲ
ଜଲଦ ନିହାରି ଚୃତକ ମରି ଗେଲ । ୧ ।

ଆନ କୟଲ ଶଠେ ବିହି କୈଲ ଆନ
ଅବ ନାହି ନିକସୟେ କଠିନ ପରାନ ।
ଏ ସଖି ବହୁତ କୟଲ ହମ ମାହ
ଦରସନ ନା ଭେଲ ସୁପୁରୁଷ ନାହ । ୨ ।

ସୁନଇତେ ନିକସଇ କଠିନ ପରାନ
ଶ୍ରବନହି ସ୍ୟାମ ନାମ କରୁ ଗାନ ।
ବିଦ୍ୟାପତି କହ ସୁପୁରୁଷ ନାରି
ମରନ ସମାପନ ପ୍ରେମ ବିଥାରି । ୩ ।

———

ଶବ୍ଦାର୍ଥ—(୧) ନାହ=ନାଥ । (୨) ଅଁକୁରେ=ଅଙ୍କୁରରେ । ବିନ=ବିନା । (୫) ଶଠରେ ଗୋଟାଏ କଥା ଥିଲା, ବିଧି ଏହାର ଅନ୍ୟଥା କଲା । (୬) ନିକସୟେ=ନିଷ୍କାସିତ ହୁଏ । (୭) ହେ ସଖି ! ହୃଦୟ ମଧ୍ୟରେ ବହୁ ଯନ୍ତ୍ରଣା କଲିଣି । (୯-୧୦) ଶୁଣୁ ଶୁଣୁ କଠିନ ପ୍ରାଣ ବିନିର୍ଗତ ହେଉ, ତୁମ୍ଭେ ସବୁ କୃଷ୍ଣନାମ ଗାନ କର । (୧୧) ସୁପୁରୁଷ ଓ ରମଣୀ ମୃତ୍ୟୁ ଶଯ୍ୟାରେ ଶୋଇବା ପର୍ଯ୍ୟନ୍ତ ପ୍ରେମ ପ୍ରସାର କରନ୍ତି ।

(୩୩)

କତି ଦିନେ ଘୁଚବ ଇହ ହାହାକାର
କତି ଦିନେ ଘୁଚବ ଗୁରୁଅ ଦୁଖଭାର ।
କତି ଦିନେ ଚାଁଦ କୁମୁଦେ ହବ ମେଲ
କତି ଦିନେ ଭ୍ରମର କମଲେ କରୁ କେଲି । ୧ ।

କତି ଦିନେ ପିୟା ମୋର ପୁଛବ ବାତ
କବହୁଁ ପୟୋଧରେ ଦେୟବ ହାତ ।
କତି ଦିନେ କରେ ଧରି ବୈଠାୟବ କୋର
କତି ଦିନେ ମନୋରଥ ପୂରବ ମୋର ॥ ୨ ।
ବିଦ୍ୟାପତି କହ ସୁନ ବରନାରି
ତେଜବି ସବ ଦୁଖ, ମିଲତ ମୁରାରି ।

———

ଶବ୍ଦାର୍ଥ—(୧) କତି ଦିନେ = କେତେ ଦିନରେ, (୨) ଗୁହୁୟା = ଗୁହ୍ଣଚର । (୩) ମେଲି = ମିଳନ (୪) ବାତ = କଥା । (୫) କୋର = କୋଳରେ । (୧୦) ତେଜବି = ମେଣ୍ଟିବ, ଅନ୍ତର୍ହିତ ହେବ ।

( ୩୪ )

କହତ କହତ ସଖି ବୋଲତ ବୋଲତ, ରେ
ହାମାରି ପିୟା କୌନ ଦେଶ, ରେ ।
ମଦନ ସରାନଲେ ଏ ତନୁ ଜର ଜର
କୁସଲ ସୁନିତେ ସନ୍ଦେଶ, ରେ । ୧ ।
ହାମାରି ନାଗର ରହାୟ ବିଦେଶ
କେମନ ନାଗରୀ ମିଲଲ, ରେ ।
ନାଗରୀ ପାଇୟ, ନାଗର ସୁଖୀ ଭେଲ
ହାମାରି ବୁକେ ଦେଇ ଗେଲ, ରେ । ୨ ।
ଶଙ୍ଖ କର ଚୂର, ବସନ କର ଦୂର
ତୋଡ଼ତ ଗଜମତି ହାର, ରେ ।
ପିୟା ଯଦି ତେଜଲ କି କାଜ ସିଙ୍ଗାରେ
ଯାମୁନ ସଲିଲ ସବ ଡାର, ରେ । ୩ ।
ସୀଥାର ସିନ୍ଦୂର, ମୁଛିୟା କର ଦୂର
ପିୟା ବିନୁ ସକଲି କୈଲାସଟେ ।
ଭନୟେ ବିଦ୍ୟାପତି ସୁନହ ଯୁବତୀ
ଦୁଖ ଭେଲ ଅବ ସେଷ, ରେ । ୪ ।

———

ଶବ୍ଦାର୍ଥ—(୪) କୁଶଳ ସମ୍ବାଦ ଶ୍ରବଣାର୍ଥ । (୮) ଗେଲ୍ = ଗେଲ, (୯) ଶଂଖ = ଶଂଖା, (୧୦) ଖୋଡ଼ଲ = ଭାଙ୍ଗିଦଅ ତ । (୧୨) ଭାର = ଫିଙ୍ଗ, (୧୩) ସୀଁଥା = ସୀମନ୍ତ, (୧୨) ଅବ = ଏବେ ।

( ୩୪ )

ଯୋ ଦିନ ମାଧବ ପ୍ରସ୍ଥାନ କଇଲ
ଉଥଲ୍ ସୋ ସବ ବୋଲ୍ ।
ସୁନ୍ଦରୀ ହୃଦୟେ କରୁଣା ବାଢଲ
ନୟାନେ ଗଲ୍ ତହିଁ ଲୋଲ୍ । ୧ ।
ଦିବ୍ୟ କରିୟା ସପଥ କରଲ୍
ନିୟରେ ଅସିୟା କାନ ।
ମଝୁ କର ଧରି ସିରେ ଠେକାୟଲ୍
ସେ ସବ ଭୈଗେଲ୍ ଆନ । ୨ ।
ପଥ ନିରଖିତେ ଗତ ଉଗ୍ଣଟନ
ଫୁଟଲ୍ ମାଧବୀ ଲତା ।
କୁହୁ କୁହୁ କରି କୋକିଲ କୁହରଇ
ଗୁଞ୍ଜରେ ଭ୍ରମର ଯତା । ୩ ।
କୋନ ସେ ନଗରେ ହରଲ୍ ନାଗର
ନାଗରୀ ପାଇୟା ଭୋର ।
କହେ ବିଦ୍ୟାପତି ସୁନ ଲୋ ଯୁବତୀ
ତୋହାରି ନାଗର ଚୋର । ୪ ।

---

ଶବ୍ଦାର୍ଥ—(୨) ସେ ସବୁ ପ୍ରସଙ୍ଗ ଉତ୍‌ଥିତ ହେଲା । (୩) କରୁଣା = କାରୁଣ୍ୟ, ଶୋକ । (୫-୬) ସୁନ୍ଦର ରୂପରେ ( ବା ଦେବତାର ନାମ ଧରି ) କାହ୍ନୁ ମୋ ନିକଟକୁ ଆସି ଶପଥ କରିଥିଲେ । (୧୨) ଯତା = ଯେତେ । ( ୧୩-୧୪ ) କେଉଁ ନଗରରେ ନାଗରୀ, ନାଗରକୁ ବାନ୍ଧିଲ ଦେଖି ହର-ନେଲା ।

( ୩୬ )

ମଳିନ ଚିକୁର ତନୁ ଚୀରେ
କରତଲେ ବୟାନ ନୟନ ଝରୁ ନୀରେ ।
ସୁନ ମାଧବ କି ବୋଲବ ତୋୟ
ତୁୟା ଗୁନେ ଲବୁଧି ମୁଗୁଧି ଭେଲି ସୋୟ । ୧ ।
କୋଇ କମଲ ଦଲେ କରଇ ବାତାସ
କୋଇ ଚତୁର ଧନୀ ହେରଇ ନିସାସ ।
କୋଇ କହେ ଅୟଲ ହରି
ସୁନୟି ଚେତନ ଭେଲି ନାମ ତୋହାରି । ୨ ।
ଉରେ ଦୋଲେ ଶ୍ୟାମଲ ବେଣୀ
କମଲିନୀ କୋଲେ ଜନୁ କାଲ ସାଁପିନୀ ।
ବିଦ୍ୟାପତି କବି ଗାଓ୍ୱୟେ
ବିରହିନୀ ବେଦନ ସଖୀ ସମୁଝାଓ୍ୱୟେ । ୩ ।

———

ଶବ୍ଦାର୍ଥ—(୧) କେଶରାଶି ମଳିନ ଏବଂ ଅଙ୍ଗ ଅନୁଜ୍ଜ୍ୱଳ ଓ ବସ୍ତ୍ରାବୃତ । (୨) ବୟାନ=ବଦନ । (୩) ଲବୁଧି=ଲବ୍‌ଧା ହୋଇ, ମୁଗୁଧି=ଅସ୍ଥିର । (୯) ଶ୍ୟାମଳ କେଶପାଶ ବକ୍ଷରେ ଝୁଲୁଛି ।

( ୩୭ )

ନଦୀ ବହେ ନୟନକ ନୀରେ
ମୁରୁଛି ପଡ଼ଲି ତସୁ ତୀରେ ।
ମାଧବ ତୋହାରି କରୁନା ଅତି ବଙ୍କା
ତୋହେ ନାହି ତିରି-ବଧ ସଙ୍କା । ୧ ।
ଚେଁଖନେ ଖିନ ଭେଲି ସାସା
କୋଈ ନଲିନୀ ଦଲେ କରୟେ ବତାସା ।
ଚୌଦସୀ ଚାଁଦ ସମାନ
ତୁୟା ବିନୁ ମୃନ ଭେଲ ପ୍ରାନ । ୨ ।

କ୍ଷୋଭ ରହୁ ଶୁଣି ଉପେକ୍ଷି
କୋଲ୍ ସିର ଧୂନି ଧୂନି ଦେଖି ।
କେ ଇ ସଖୀ ପରଖଇ ସ୍ୱାସ
ହାମ ଧାଁୟଲିଁ ତୁୟା ପାସ । ୩ ।

ପାଲଟି ଚଲହ ନିଜ ଗେହ
ମନେ ଗୁନି ପୂରବ ସିନେହ ।
ସୁକବି ବିଦ୍ୟାପତି ଭନ
ମନେ ଜାନି ବୁଝହ ସେୟାନ । ୪ ।

———

ଶବ୍ଦାର୍ଥ—(୧) ନୟାନକ=ନୟନର । (୪) ଢସୁ=ଢାଳ (୪) ତିରବଧ=ସ୍ତ୍ରୀ-ବଧ । (୫) ଖିନ=କ୍ଷୀଣ । ସାସା=ଶ୍ୱାସ । (୭) ବତାସା=ପବନ । (୯) ଉପେଖି=ଉପେକ୍ଷା କରି । (୧୦) କେହୁ କେହୁ ମୁଣ୍ଡ କୋଡ଼ି କୋଡ଼ି ଅନାଇଛନ୍ତି । (୧୧) ପରଖଇ=କରୁଛନ୍ତି । (୧୩) ଗେହ=ଗୃହ । (୧୬) ସେୟାନ=ସୁଜ୍ଞାନ ।

( ୩୮ )

ମାଧବ ହେରଲୁଁ ଅଇନୁ ରାଇ
ବିରହ ବିପତି ନା ଦେଇ ସମତି
ରହଲ ବଦନ ଗୁଇ । ୧ ।

ମରକତ ସ୍ଥଲୀ ସୁତଲି ଅଛଲି
ବିରହେ ସେ ଖୀନ ଦେହା ।
ନିକଷ ପାଷାନେ ଯେନ ପାଁଚ ବାନେ
କଷିଲ୍ କନକ ରେହା । ୨ ।

ବୟାନ ମଣ୍ଡଲ ଲୋଟାଇ କୁନ୍ତଲ
ଛାଦେ ସେ ଅଧିକ ସୋହେ ।
ରାହୁ ଭୟେ ସସୀ ଭୂମେ ପଡ଼ୁ ଖସି
ଐସେ ଉପଜଲ୍ ମୋହେ । ୩ ।

ବିରହ ବେଦନ କି ତୋହେ କହବ
ସୁନହ ନିଠୁର କାନ ।
ଭନେ ବିଦ୍ୟାପତି ସେ ଯେ କୁଲବତୀ
ଜୀବନ ସଂସୟ ଜାନ । ୪ ।

———

ଶବ୍ଦାର୍ଥ—(୧) ମାଧବ, ରାଇକି ଦେଖି ଆସିଲି । (୨-୩) ବିରହ ବିପତ୍ତି ବିଷୟରେ କୌଣସି ମତ ବା ଉତ୍ତର ନ ଦେଇ ସେ କେବଳ ମୁହଁକୁ ଅନାଇଁ ରହିଲା । (୪) ସ୍ୱତଳି ଅଛଳି = ଶୋଇଥିଲା । (୬-୭) କଷଟି ପଥରରେ ଯେମିତି କନ୍ଦର୍ପ ସ୍ୱର୍ଣ୍ଣ-ରେଖା ଅଙ୍କିତ କରିଛନ୍ତି । (୯) ସୋହେ = ଶୋଭେ । (୧୦-୧୧) ରାହୁ ଭୟରେ ଶଶୀ ଭୂତଳରେ ଖସି ପଡ଼ିଛି ବୋଲି ମୋର ଭ୍ରମ ଜନ୍ମିଲା ।

( ୩୯ )

ମାଧବ ପେଖଲୁ ସୋ ଧନୀ ରାଇ
ଚିତ୍ର ପୁତଲି ଜନୁ ଏକ ଠାଠେ ରହଇ ।
ବେଢଲି ସକଲ ସଖୀ ଚୌପାସା
ଅତି ଖୀନ ଶ୍ୱାସ ବହତି ତସୁ ନାସା । ୧ ।

ଅତି ଖୀନ ତନୁ କାଞ୍ଚନ ରେହା
ହେରଇତେ କୋଇ ନା ଧର ନିଜ ଦେହା ।
କଙ୍କନ ବଲୟା ଗଲିତ ଦୁଇ ହାତ
ପୁଂଛଲି କବରୀ ନା ସମ୍ବର ମାଥ । ୨ ।

ଚେତନ ମୂରଛନ ବୁଝନ ନା ପାରି
ଅନୁଖନ ଘୋର ବିରହ ଜ୍ୱର ଜାରି ।
ବିଦ୍ୟାପତି କହ ନିରଦୟ ଦେହ
ତେଜଲି ଅବ ଜଗଜନ ଅନୁଲେହ । ୩ ।

———

ଶବ୍ଦାର୍ଥ—(୨) ଚନ୍ଦ୍ର ପୁତ୍ତଳିକାବତ୍ ଅନିମେଷ ନୟନରେ ଅନାଇ ରହୁଛି । (୩) ବେଢ଼ଲ=ବେଢ଼ିଲେ । ଚୌପାସ=ଚତୁର୍ଦ୍ଦିଗରେ (୫) କାଞ୍ଚନ-ରେହା=ସ୍ୱର୍ଣ୍ଣରେଖା । (୬) ଦେଖିଲେ ତାହାଙ୍କୁ ଜଣାପଡ଼ୁନାହିଁ ଯେ ଏ ଦେହଟା ତା ନିଜର । (୭) ତେଣୁ ହସ୍ତରୁ କଙ୍କଣ ଓ ବଳୟ ଗଳି ପଡ଼ୁଛି । (୮) ମସ୍ତକରେ ବେଣୀ ସର୍ବଦା ଉନ୍ମୁକ୍ତ । (୯-୧୦) ସେ ନିରନ୍ତର ଘୋର ବିରହ-ତାପରେ ତାପିତା, ଏପରି କି ସେ ସଚେତନା କି ଅଚେତନା ତା ମଧ୍ୟ ବୁଝି ହେଉ ନାହିଁ । (୧୨) ଅନୁଲେହ=ସ୍ନେହ । ଜଗଜନ—ଜଗଜ୍ଜନ ।

( ୪୦ )

ମାଧବ ଯାଇନା ପେଖସି ତାହି
ଆକହୁଁ କାଲି ପରାନ ପରତେଜବ
କତ ସହ ବିରହକ ଦାହି । ୧ ।
ସୀତଲ ସଲିଲ, କମଲଦଲ ସେଜ ହ
ଲେପହୁଁ ଚନ୍ଦନ ପଙ୍କା ।
ସେ ସବ ଯତହୁଁ ଅନଲ ସମ ହୋୟଲ
ଦସ ଗୁନ ଦାହଇ ମୃଗାଙ୍କା । ୨ ।
ମୂରଛି ଗେଲ ଧନି ଉଠଇ ଧରନୀ ଧରି
ଖେପହ ନିସି ନିସି ଜାଗି ।
ଚମକି ଚମକି ଧନି ବୋଲଇ ପିଵ ପିଵ
ଜଗତ ଭରଲ ତମୁ ଆଗି । ୩ ।
କଣ୍ଠେ ଉପଗୃର ବୁଝଇ ନା ପାରଇ
କବି ବିଦ୍ୟାପତି ଭନେ ।
କେବଲେ ଦସମୀ ଦସା ବିଧି ସରଜିଲ
ଅବହୁଁ କରହ ଅବଧାନେ । ୪ ।

———

ଶବ୍ଦାର୍ଥ—(୧) ମାଧବ । ତାଳାକୁ ଯାଇ ଦେଖୁନାହୁଁ । (୬) ମୃଗାଙ୍କା=ଚନ୍ଦ୍ର । (୯) ଖେପହ=କ୍ଷେପଣ କରେ । (୧୧) ତା ପାଇଁ

ଜଗତ ଅଗ୍ନିମୟ ହୋଇଛି । (୧୪-୧୫) ବର୍ତ୍ତମାନ ସୂର୍ଯ୍ୟା ପ୍ରତିଧାନ କରି, ବିଧାତା ଦଶମୀ ଦଶା ( ମାରକ ଦଶା ) ସୃଷ୍ଟି କରିଛି, ଅର୍ଥାତ୍ ଏବେ କେବଳ ମରିବାକୁ ବାକି ରହିଲା ।

## ( ୪୧ )

ମାଧବ କତ ପରବୋଧବ ରାଧା

ହା ହରି ହା ହରି କହତହିଁ ବେରି ବେରି
ଅବ ଜୀଉ କରବ ସମାଧା । ୧ ।
ଧରଣୀ ଧରିୟା ଧନି କତନହୁ ବଇସଇ
ପୁନହି ଉଠଏ ନହି ପାରି ।
ସହଜହିଁ ବିରହିନି ଜଗ ମହଁ ତାପିନି
ବୈରି ମଦନ ଶର-ଧାରି । ୨ ।
ଅରୁଣ-ନୟନ-ନୋର ତୀତଲ କଲେବର
ବିଲୁଲିତ ଦୀଘଲ କେଶା ।
ମନ୍ଦିର ବାହିର କରଇତ ସଂଶୟ
ସହଚରି ଗନତହି ସେଷା । ୩ ।
ଆନି ନଳିନୀ କେଓ ରମନି ସୁତାଓଲି
କେଓ ଦେଇ ମୁଖ ପର ନୀରେ ।
ନିସବଦ ପେଖି କେଓ ସାଁସ ନିହାରଏ
କେଓ ଦେଇ ମନ୍ଦ ସମୀରେ । ୪ ।
କି କହବ ଖେଦ ଭେଦ ଜନି ଅନ୍ତର
ଘନ ଘନ ଉତପତ ସାଁସ ।
ଭନଇ ବିଦ୍ୟାପତି ସେ ହୋ କଲବତି
ଜୀବ ବାଁଧଲ ଆଶ-ପାଶ । ୫ ।

---

ଶବ୍ଦାର୍ଥ—( ୧ ) ପରବୋଧନ=ପ୍ରବୋଧ ଦେବ ( ୨ ) ବେରି ବେରି=ବାରମ୍ବାର (୩) ଏବେ ଜୀବନ ସମାପନ କରିବା । (୫) ପାରି=ପାରେ । (୬) ଜଗମହଁ=ଜଗତମଧ୍ୟରେ । (୮) ନୟନ-ନୋର=ନୟନଜଳରେ । ତୀତଲ=ତିନ୍ତିଲା (୯) ଦୀଘଲ=ଦୀର୍ଘ ।

(୧୧) ସହଚରୀମାନେ ମୃତ୍ୟୁର ଅଶଙ୍କା କରୁଛନ୍ତି (୧୬) ଖେଦର କଥା କଅଣ ଆଉ କହିବି ? ଯେପରିକି ଅନ୍ତର୍ଭେଦୀ ଘନ ଘନ ଊର୍ଦ୍ଧ୍ୱଶ୍ୱାସ ବହୁଛି । (୧୯) ଅଶାପାଶରେ ରହି ଜୀବ ବନ୍ଧନ କରି ରହିଛି ।

( ୪୨ )

କି କହବ ମାଧବ କି କରବ କାଜେ
ପେଖିନୁ କଲାବତି ପ୍ରିୟ ସଖି ମାଝେ ।
ଅଛଇତେ ଅଚଲ କାଞ୍ଚନ ପ୍ରତୁଲ ।
ଭୁବନେ ଅନୁପମ ରୂପ ଗୁଣେ କୁସଲ । ୧ ।
ଏବେ ଭେଲ ବିପରୀତ ଝାମରୁ ଦେହା
ଦିବସେ ମଲିନ ଜନୁ ଚାଁଦ କ ରେହା ।
ବାମକରେ କପୋଲ ଲୋଲିତ କେସଭାର
କର ନଖେ ଲିଖୁ ମହି ଆଁଖି ଜଲଧାର । ୨ ।
ବିଦ୍ୟାପତି ଭନ ସୁନ ବର-କାନ
ରାଜା ସିବସିଂହ ଇଥେ ପରମାନ ।

---

ଶବ୍ଦାର୍ଥ—(୩) ଅଛଇତେ ଅଚଲ = ରହିଥିଲା, ପ୍ରତୁଲ = ପିତୁଳା (୫) ଝାମର ଦେହା = ବିବର୍ଣ୍ଣ ଶରୀର ।

(୪୩)

ସୁନ ସୁନ ମାଧବ ପଡ଼ଲ ଅବାଜ
ବିରହିନୀ ରୋଦତି ମନ୍ଦିର ମାଝ ।
ଅଚେତନ ସୁନ୍ଦରୀ ନା ମିଲୟେ ଦିଠି
କନକ ପୁତଲି କୈସେ ଅବନୀୟେ ଲୋଟି । ୧ ।
କୋ ଜାନେ କୈସନ ତୋହାରି ପିରୀତି
ବାଢଇ ଦାରୁନ ପ୍ରେମ ବଧହ ଯୁବତି ।
କହ ବିଦ୍ୟାପତି ସୁନହ ମୁରାରି
ସୁପୁରୁଷ ନା ଛୋଡ଼ଇ ରସବତି ନାରି । ୨ ।

---

ଶବ୍ଦାର୍ଥ—(୩) ଅଖି ଖୋଲୁନାହିଁ (୬) ଦାରୁଣ ପ୍ରେମ ବଢ଼ାଇ ଯୁବତୀ-ବଧ କରୁଛୁ ।

( ୪୪ )

ହମକର ପେଖି ଆନତ କର ଆନନ
ରହତ କରୁନା ପଥ-ହେର ।
ନୟନ-କାଜର ଦେଇ ଲିଖିଇ ବିଧୁ ନୁଦ
ତା ସଙ୍ଗେ କହତହି ଟେର । ୧ ।
ମାଧବ କଠିନ ହୃଦୟ ପରବାସି
ତୋହାର ବିନ୍ଦିସମ୍ ପେଖିନୁ ବିରହନୀ
ଅବହୁ ପାଲଟି ଘରେ ଯାସି । ୨ ।
ଦକ୍ଷିନ ପବନ ବହେ କୈସେ ଯୁବତୀ ସହେ
ତାହେ ଦୁଖ ଦେଇ ଅନଙ୍ଗ ।
ଗେଲହୁ ପରାନ ଆସା ଦେଇ ରାଖଇ
ଦସ ନଖେ ଲିଖଇ ଭୁଜଙ୍ଗ । ୩ ।
ଭନୟେ ବିଦ୍ୟାପତି ସିବସିଂହ ନରପତି
ବିରହକ ଇହ ଉପଚାର ।
ପରଭୃତକ ଡର ବାୟସ ଲେଇ କର
ବାୟସ ନିୟରେ ପୁକାର । ୪ ।

———

ଶବ୍ଦାର୍ଥ—(୩-୪) ନୟନର କଜ୍ଜଳ ଦ୍ୱାରା ରାହୁର ଛବି ଅଙ୍କନ କରେ ଏବଂ ତା ସଙ୍ଗରେ ଟେରେଇ କଥା କହେ, ଅର୍ଥାତ୍ ବକ୍ରଦୃଷ୍ଟିରେ ତାକୁ ଅନାଇ ସେ ମୁଖଚନ୍ଦ୍ରକୁ ଗ୍ରାସ କରୁନାହିଁ ବୋଲି ବିରକ୍ତି ପ୍ରକାଶ କରେ । (୫) ପରବାସି=ପ୍ରବାସୀ, (୭) ଏବେ ହେଲେ ଘରକୁ ଲେଉଟି ଯା । (୧୦-୧୧) ଜୀବନ ଗତପ୍ରାୟ, ଆଶା ପ୍ରଦାନ ପୂର୍ବକ ତାକୁ ସେ ଧରି ରଖିଛୁ, ଦଶ ନଖରେ ଭୁଜଙ୍ଗ ଅଙ୍କନ କରୁଛୁ । (ଭୁଜଙ୍ଗାଙ୍କନର ଅଭିପ୍ରାୟ— ଏହାହିଁ ଯେ ପବନାଶୀ ଭୁଜଙ୍ଗାବଳୀ ଯେପରି ଉପର୍ଯ୍ୟୁକ୍ତ ମଳୟ-ପବନକୁ ଖାଇଦେଇ ବାଳାକୁ କ୍ଲେଶମୁକ୍ତା କରିବେ ) (୧୪-୧୫) କୋକିଳ ଭୟ

ନିବାରଣାର୍ଥି ହସ୍ତରେ ପାୟସ ଧରି ବାୟସ ନିକଟରେ ଶଙ୍କାର କର ।
( ମର୍ମାର୍ଥ ଏହି ଯେ କାକକୁ ପାୟସ ଯାଚି ଅନୁରୋଧ କର, ଯେମନ୍ତିକି ସେ ଆଜି କୋକିଳକୁ ପ୍ରତିପାଳନ କରିବ ନାହିଁ, କାରଣ ବିରହିଣୀ ପକ୍ଷରେ କୋକିଳ-କୂଜନ ମର୍ମନ୍ତୁଦ ) ।

( ୪୫ )

ପହିଲ ପିୟା ମୋର, ସୁଖେ ସୁଖ ହୋଇଲ
ତିଲ ଏକ ନା ଛୋଡ଼ଲ ଅଙ୍ଗ ।
ଅପରୂପ ପ୍ରେମ ପାଟସ ତନୁ ଗାଁଥଲ
ଅବ ଛେଜଲ ମୋର ସଙ୍ଗ । ୧ ।
ସଖି ! ହାମ ଜୀୟବ କଥି ଲଗି ?
ଯୋ ବିନୁ ତିଲ ଏକ ରହଇ ନ ପାରଏ
ସୋ ଭେଲ ପର ଅନୁରାଗୀ । ୨ ।
ଅଙ୍ଗୁଲିକ ଅଙ୍ଗୁଠି, ସେ ଭେଲ ବାହୁଟି
ହାର ଭେଲ ଅତି ଭାର ।
ମନମଥ ବାନହିଁ ଅନ୍ତର ଜରଜର
ବିଦ୍ୟାପତି ଦୁଖ କହଇ ନା ପାର । ୩

———

ଶବ୍ଦାର୍ଥ—(୧) ପହିଲ—ପ୍ରଥମରେ । (୩) ଗାଁଥଲ=ଗୁନ୍ଥିଲା । (୪) ଛେଜଲ=ଛେଡ଼ିଲା । (୫) ସଖି ! ମୁଁ ବଞ୍ଚିବି କାହିଁକି ବା କାହାଲାଗି ? (୮) ମୁଁ ଏତେ କୃଶ ଯେ ଅଙ୍ଗୁଳିର ଅଙ୍ଗୁରୀୟକ ( ମୁଦି ) ବାହୁଟି ବଳୟ ( ତାଡ଼ କଙ୍କଣ ) ହୋଇଛି । (୧୧) କହଇ ନା ପାର=କହି ପାରୁ-ନାହିଁ ।

( ୪୬ )

ସଖୀଗଣ କହବେ ଥୋଇ କଲେବର
ଘରସନେ ବାହିର ହୋୟ ।
ବିନା ଅବଲମ୍ବନେ ଉଠଇ ନା ପାରଇ
ଅତି ନିବେଦଲ୍ ତୋୟ ।

ମାଧବ ! କତି ପରବୋଧବି ତୋହି
ଦେହ ଦୀପତି ଗେଲ, ହାର ଭାର ଭେଲ
ଜନମ ଗଓଁାୟୁଲି ସେହି । ୨ ।
ଅଙ୍ଗୁରି ବଲୟା ଭେଲ, ହାତେ ପିନ୍ଧାଓଲି
ଦାରୁନ ତୁୟା ନବ ଲେହା ।
ସଖୀଗନ ସାହସେ ଛୋଇ ନ ପାରଇ
ତନୁକ ଦୋସର ଦେହା । ୩ ।
ନବମୀ ଦସା ଗେଲ ଦେଖି ଆୟଲୁ ଚଲି
କାଲି ରଜନୀ ଅବସାନେ ।
ଅଜୁକ ଏତ ଖନ ଟେଲି ସକଲ ଦିନ
ଭାଲ ମନ୍ଦ ବିହି ପଚ୍ଛେ ଜାନେ । ୪ ।
କେଲି-କଲପତରୁ ସୁପୁରୁଷ ଅବତରୁ
ବିଦ୍ୟାପତି କବି ଭନେ ।
ରାଜା ସିବସିଂହ ରୂପନରାୟନ
ଲଛିମା ଦେବୀ ପରମାନେ । ୫ ।

———

ଶବ୍ଦାର୍ଥ—(୧) କନ୍ଦରେ = ସ୍କନ୍ଧରେ, କାନ୍ଧରେ । (୨) ଘର-ସନେ = ଗୃହରୁ । (୪) ନିବେଦଲି = ନିବେଦନ କଲି । (୫) ପରବୋଧବି ତୋହି = ତାକୁ ପ୍ରବୋଧ ଦେବି । (୭) ଗଁଓାୟୁଲି = କଟାଇ ଦେଲି (୮) ମୁଦ ବଲା ଭଲିଆ ହେଲା, ଅର୍ଥାତ୍ ଦେହ ଅତି କ୍ଷୀଣ ହେବାରୁ ହସ୍ତ ଏପରି କ୍ଷୀଣ ହୋଇପଡ଼ିଲା ଯେ ମୁଦିକୁ ଅଙ୍ଗୁଳିରେ ନ ପିନ୍ଧି ହସ୍ତରେ ପିନ୍ଧିବା ମଧ୍ୟ ସମ୍ଭବ ହେଲା । (୧୦) ଛୋଇ = ଛୁଇଁ, ତନୁକ ଦୋସର = ଦ୍ୱିତୀୟ ତନୁବତ୍, କୃଶତା ଏବେ ଅଧିକ ଯେ, ଦେହ ତନୁ ଭଳିଆ ହୋଇଛି କହିଲେ ଚଳେ । (୧୨) ନବମୀ ଦସା = କାମ ଦଶା ଦଶପ୍ରକାର ଯଥା—(୧) ଇଚ୍ଛା, (୨) ଚିନ୍ତା, (୩) ସ୍ମୃତି, (୪) ଗୁଣକୀର୍ତ୍ତନ, (୫) ଉଦ୍‌ବେଗ, (୬) ବିଳାସ, (୭) ଉନ୍ମାଦ, (୮) ବ୍ୟାଧି (୯) ଜଡ଼ତା (୧୦) ଓ ମୃତ୍ୟୁ, ଏହି ଦଶୋଟି ଦଶାର ନବମ ଦଶା ହେଉଛି ଜଡ଼ତା ବା ମୂର୍ଚ୍ଛା । (୧୫) ପଚ୍ଛେ = ଉପରେ । ଭଲ-ମନ୍ଦ ଏବେ ବିଧି ଉପରେ ନିର୍ଭର କରେ ବୋଲି ଜାଣିବୁ ।

( ୪୭ )

ପାସରତେ ସଖିର ହୋଯ଼ ଅବସାନ
କହ଼ତେ ନା ଲୟ଼ ଅବ ଗୁଣ୍ଢଇ ଅବଧାନ ।
କହନେ ନା ପାରୟେ ସହନେ ଯାଯ଼
ରଚହ ସଜନି ଅବ କୁ କର ଉପାଯ଼ । ୧ ।
କୌନ ବିହି ନିରମିଲ ଏଇ ପୁନ ଲେହ
କାହେ କୁଲବତି କରି ଗଢଲ ମୋର ଦେହ ।
କାମ କରେ ଧରୟେ ସେ କରୟେ ବେଭାର
ରାଖୟେ ମନ୍ଦିରେ ଏ କୁଲ ଆଗୁର । ୨ ।
ସହଇ ନା ପାରୟେ ଚଲଇ ନା ପାର
ଘନ ଫିରୁ କୈସେ ପିଞ୍ଜରମାହା ସାର ।
ଏତହୁ ବିପଦେ କାହେ ଜୀବନ୍ତେ ଦେହ
ଭନୟେ ବିଦ୍ୟାପତି ବିଷମ ଏ ଲେହ । ୩ ।

———

ଶବ୍ଦାର୍ଥ—(୧) ପାସରତେ = ପାସୋରିବାକୁ । (୨) କହ଼ତେ ନା ଲୟ଼ = କହିବା ଅନୁଚିତ । (୪) ରଚହ = ରଚନା କର । (୭-୮) କନ୍ଦର୍ପ ମୋ ହାତ ଧରି, ସମସ୍ତ କୁଳାଗୁରକୁ ଗୃହରେ ରଖିଦେଇ ବାହାର ପଡ଼ିବାକୁ ବର୍ତ୍ତମାନ ବାଧ୍ୟ କରୁଛି । (୧୦) ପିଞ୍ଜର ମଧ୍ୟବର୍ତ୍ତିନୀ ସାରିକାବତ୍ ନିରନ୍ତର ଅସ୍ଥିର ଭାବରେ ବିଚରଣ କରୁଛି । (୧୨) ଲେହ = ସ୍ନେହ ।

( ୪୮ )

ସୁନ ସୁନ ସୁନ୍ଦରି କର ଅବଧାନ
ନାହ ରସିକବର ବିଦଗଧ ଜାନ ।
କାହେ ତୁହୁଁ ହୃଦୟେ କରସି ଅନୁତାପ
ଅତଏ ମିଲବ ସୋଇ ସୁପୁରୁଖ ଆପ । ୧ ।

ଉଦଭଟ ପ୍ରେମେ କରଇସି ଅନୁରାଗ
ନିତ ଯୌବନ ହୃଦୟା ମାହା ଜାଗ
ବିଦ୍ୟାପତି କହ ବାନ୍ଧବ ଥେହ
ସୁପୁରୁଷ କବହୁଁ ନା ତେଜୟେ ନେହ । ୨ ।

---

ଶବ୍ଦାର୍ଥ—(୨) ନାଥ ରସିକଶ୍ରେଷ୍ଠ ଓ ସ୍ୱମନ୍ତ୍ରିତ । (୪) ଅପ=ଅପେ, (୫) ଉଦଭଟ=ଉଦ୍‌ଭଟ, । (୭) ଥେହ=ସ୍ଥିରତ୍ୱ, ବାନ୍ଧବର ସ୍ଥିରତା ।

( ୪୯ )

ଏ ସଖି କାହେ କହସି ଅନୁଯୋଗେ
କାନୁ ସେ ଅବହୁ କରବ ପ୍ରେମ ଭୋଗେ ।
ବୋଲେ ଲେୟବ ସଖି ତୁହ୍ନଁକ ପିୟା
ହାମ ଚଲନୁ ତୁହୁ ଥିର କର ହିୟା । ୧ ।

ଏତ କହି କାନୁ ପାସେ ମିଲଲ ସେ ସଖୀ
ପ୍ରେମକ ରୀତ କହଲ ସବ ଦୁଖୀ ।
ସୁନଇତହି କାନୁ ମିରଲ ଧନୀ ପାସ
ବିଦ୍ୟାପତି କହେ ଅଧିକ ଉଲ୍ଲାସ ।

---

( ଏହି କବିତାଟି "ପ୍ରବୋଧ" ପର୍ଯ୍ୟାୟଭୁକ୍ତ ହେଲେହେଁ ଏହାର ଭାବ ମିଳନାତ୍ମକ । ଯାହା ହେଉ, ମୂଳ ଗ୍ରନ୍ଥାବଳୀରେ ଏହା ପ୍ରବୋଧାତ୍ମକ ହୋଇଥିବାରୁ ଏଠାରେହିଁ ସନ୍ନିବେଶିତ ହେଲା )

ଶବ୍ଦାର୍ଥ—(୨) କାହ୍ନୁ ସଙ୍ଗରେ ଏହିକ୍ଷଣି ପ୍ରେମଭୋଗ କରିବୁ । (୪) ମୁଁ ଚାଲିଲି, ତୁ ହୃଦୟ ସ୍ଥିର କର । (୬) ପ୍ରେମକ ରୀତ=ପ୍ରେମର ରୀତି ।

( ୫୦ )

## ମାଧବ ଓ ନବ-ନାଗରୀ ବାଳା

ଶୁନ୍ଧ ବନ୍ଧୁରଲି, ବିହିକ ଡାରଲି
ଭେଲି ନିମାଲିକ ମାଲି । ୧ ।
ସେ ଯେ ସୁହାଗିନୀ ଦେଖ୍ଲ ଲୀନା ଗିନି
ପନ୍ଥ ନିହାରଲି ଘୋରି ।
ନିଚଲି ଲୋଚନ ନା ସୁନେ ବଚନ
ଝରି ଝରି ପଡ଼ୁ ଲୋରି । ୨ ।
ତୋହାର ମୁରଲୀ ସେ ଦିକେ ଘୁଡ଼ଲି
ଝାମରୁ ଝାମରୁ ଦେହା ।
ଜନୁଁ ସେ ସୋଣାରେ କସି କସଠିକେ
ଛେଜଲି କନକ-ରେହା । ୩ ।
ଫୁଯୁଲ କବରୀ ନା ବାନ୍ଧେ ସମ୍ବରି
ଧନୀ ଯେ ଅବସ ଏଠା ।
ରୁଖଲି ଭୁଖଲି ଦୁଖଲି ଦେଖଲି
ସଖିନୀ ସଙ୍ଗ ସମେଠା । ୪ ।
ଭୁସସି ଭୁସସି ପଡ଼ୁ ଖସି ଖସି
ଅଲି ଅଲିଙ୍ଗନ ଗୃହେ ।
ଯାକର ବେୟାଧି ପରାଧିନ ଔଷଧ
ତା କର ଜୀବନ କାହେ । ୫ ।
ଭଣଯେ ବିଦ୍ୟାପତି କରଯେ ସଯଥି
ଅର ଅପରୂପ କଥା ।
ଭାବିତେ ଭାବିତେ ତୋହାର ଚରିତ
ଭରମ ହୋଯୁଲ ଯଥା । ୬ ।

———

ଭାବାର୍ଥ—(୨-୩) ଶୁ ସ୍ମୃତି ଅସିଲ, ତାକୁ ବିଧାତା ହାତରେ ଅର୍ପିଲ, ସେ ନିର୍ମାଲ୍ୟ ( ବାସୁଷ୍ଣା ) ମାଳିକା ସଦୃଶୀ ହେଲା । ( ୪-୫ ) ବୋଧହୁଏ ତୋର ପଥ ଗୁହିଁ ଗୁହିଁ ତାର ଶରୀର ଲୀନ ପ୍ରାୟ ହୋଇ

ଯାଇଛୁ । (୬) ନିଚଲ୍ = ନିଶ୍ଚଳ, ସ୍ଥିର । (୭) ଥିର ଥିର = ସ୍ଥିର ସ୍ଥିର । ( ୮-୯ ) ତୋର ବଂଶୀ-ସ୍ୱନ ସେ ଦୂରରେ ଶୁଣି ନ ପିବାରୁ ତାର ଦେହ ବରାବର ବିଶୁଷ୍କ ହେଉଛି । ( ୧୦-୧୧ ) ଯେପରିକି ସେହି ସୁବର୍ଣ୍ଣକୁ କଷଟି ପଥରରେ କଷି କେବଳ କନକ ରେଖା ମାତ୍ର ଅବଶିଷ୍ଟ ରଖା ହୋଇଛି । (୧୨) ଫୁଯୁଲ = ଉନ୍ମୁକ୍ତ, ଅଲୁଲାୟିତ । (୧୩) ଏତା = ଏତେ । (୧୪) ରୁଖଲ୍ = ରୁକ୍ଷ୍ୟ, ଭୁଖଲ୍ = କ୍ଷୁଧିତା, ଦୁଖଲ = ମ୍ରିୟମାଣା (୧୫) ସଖିନୀ-ସଙ୍ଗ ସମେତା = ସଙ୍ଗରେ ଥିବା ସହଚରୀଗଣଙ୍କ ସହିତା ( ୧୬-୧୭ ) ଉଷ୍ଠୁ ପରି ଖସି ଖସି ପଡ଼ୁଛି ଓ ସଖୀ ଆଲିଙ୍ଗନ ଅଭିଳାଷ ପୋଷଣ କରୁଛି । ( ଭୁଷଶୀର୍ଷ ପରିତ୍ୟକ୍ତ ଧାନ୍ୟତ୍ୱର୍ବର୍ ଭୂମୌ ପତତୀତି । ଆଲି-ଆଲିଙ୍ଗନେତ୍ୟାଦନା ପ୍ରେମୋନ୍ମାଦଂ ସୂଚିତମିତି ଶ୍ରୀବାସୁଦେବ ଠକ୍କୁରସ୍ୟ ବ୍ୟାଖ୍ୟାୟାଂ ) ( ୧୮-୧୯ ) ଯେଉଁ ବ୍ୟାଧି ବା ପୀଡ଼ାର ଔଷଧ ପରିର ଅଧୀନ, ତାହାର ଜୀବନ ଧାରଣରେ ସାର୍ଥକତା କଅଣ ? (୨୦) ସପଥି = ଶପଥ ।

(୫୧)

କରେ କର ଧରି ଯୋ କଛୁ କହଲ
ବଦନ ବିହସି ଥୋର ।
କୈସେ ହମକର ମୁଗ ପରିହରି
କମୁଦ କଯ୍‌ଲ କୋର । ୧ ।
ସମାହେ ସପଥି କରହୁ ତୋର
ସୋଇ ଗୁନବତି ଗୁନ ଗନି ଗନି
ନା ଜାନି କି ଗତି ମୋର । ୨ ।
ଗଲିତ ବସନ ଗଲିତ ଭୂଷନ
ଫୁଯୁଲ କବରୀ ଭାର ।
ଅହା ଉହୁ କରି ଯେ କଛୁ କହଲ
ତାହା କି ବିସୁରିବାର । ୩ ।
ନିଭୃତ କେତନ ହରଲ ଚେତନ
ହୃଦୟେ ରହଲ ବାଧା ।
ଭନେ ବିଦ୍ୟାପତି ଭାଲେ ସେ ଉମତି
ବିପତି ପଡ଼ଲ ରାଧା । ୪ ।

ଶବ୍ଦାର୍ଥ—(ଏଥିରେ କୃଷ୍ଣୋକ୍ତି ଉଲ୍ଲିଖିତ ହୋଇଛି ) (୨) ସସ୍ମିତ ବଦନରେ ଅଳ୍ପ ହସି । (୩) ହିମକର=ଚନ୍ଦ୍ର । (୪) କୋର=କୋଳ । (୫) ରମା ଲେ, ତୋ ରାଣି । (୧୧) ବିସୁରିବାର=ଭୁଲିବାର । (୧୨) ନିଭୃତ କେତନ=ନିର୍ଜନ କୁଞ୍ଜରେ । (୧୪) ଉମତ=ଉନ୍ମତ୍ତ । (୧୫) ବିପତି=ବିପଥରେ ବା ବିପଦରେ । ବିଦ୍ୟାପତି ଭଣନ୍ତି—ଯେ ଭାଗ୍ୟରେ ଉନ୍ମତ୍ତର ସମାଗମ ଘଟିବାରୁ ରାଧା ବିପତ୍ତିରେ ପଡ଼ିଲା ।

( ୫୨ )

ବର ରମା ହେ, ସୋ କାହେ ବିସୁରଣ ଯାଏ ।
କରେ ଧରି ମାଥୁର ଅନୁମତି ମାଗିତେ
ତତହି ପଡ଼ଲି ମୂରଛାଏ । ୧ ।
କିଛୁ ଗଦ ଗଦ ସ୍ୱରେ ଲହୁ ଲହୁ ଆଖରେ
ଯୋ କିଛୁ କହଲି ବରରମା ।
କଠିନ ସରୀର ମୋର ତେଇଁ ଚଲି ଆଓଲି
ଚିତ ରହଲ ଯୋଇ ଠାମା । ୨ ।
ତା ବିନେ ରାତି ଦିବସ ନାହି ଭାଓଇ
ତାହେ ରହଲ ମନ ଲାଗି ।
ଅନ୍ୟ ରମଣୀ ସଙ୍ଗେ ରାଜ ଧର୍ମଦମୟେ
ଆଛୟେ କୈସେ ବୈରାଗି ।୩।
ଦୁଇ ଏକ ଦିବସେ ନିଚୟେ ହାମ ଜାୟବ
ତୁହୁଁ ପରବୋଧବି ରାଇ ।
ବିଦ୍ୟାପତି କହ ଚିତ ରହଲ ତାହି
ପ୍ରେମେ ମିଲୟବ ଯାଇ । ୪ ।

---

ଅର୍ଥ—ରମାବରେ ! ସେ କଅଣ ଭୁଲି ହେବ ? କର ଧରି ମଥୁରାଗମନ ପାଇଁ ଅନୁମତି ମାଗିଲା କ୍ଷଣି ହିଁ ସେ ମୂର୍ଚ୍ଛିତା ହୋଇ ପଡ଼ିଲା । ଈଷତ୍ ଗଦଗଦ କଣ୍ଠରେ, ଲଘୁ ଲଘୁ ଶବ୍ଦରେ ସୁନ୍ଦରୀ ରାଣୀ ଯାହା କିଛି କହିଲା, ତାହା ଶୁଣି ସୁଦ୍ଧା ମୋର କଠିନ ଶରୀର ବୋଲି ମୁଁ ଚାଲି ଆସିଲି, (କିନ୍ତୁ) ଚିତ୍ତ ସେହିଠାରେ ହିଁ ରହିଗଲା । ତା ବିନା ରାତି-ଦିନ

ଏଠାରେ ଅଶୋଭନୀୟ ( ବା ଅନୁପଭୋଗ୍ୟ ) ହୋଇ ଉଠିଛି, ଯେ ହେତୁ ମୁଁ ଅପର ରମଣୀ ସଙ୍ଗରେ ରାଜ୍ୟସମ୍ପଦ ମଧ୍ୟରେ ବୈରାଗୀ ପରି ରହୁଛି । ଦିନେ ବା ଦୁଇଦିନ ମଧ୍ୟରେ ମୁଁ ନିଶ୍ଚୟ ଯିବି, ତୁ ରାଇଙ୍କ ପ୍ରବୋଧ ଦେଇଥିବୁ । ବିଦ୍ୟାପତି କହନ୍ତି—ଯେ ଶୀଘ୍ର ସେଠାରେ ରହିଲ, ପ୍ରେମମୟ ମିଳନ ଘଟିବ ।

---

## ଆଶା, ପୁନର୍ମିଳନ ଓ ରସୋଦଗ୍‌ରଣ

(୯)

ଜବ ହରି ଅଓବ ଗୋକୁଲ ପୁର
ଘରେ ଘରେ ନଗରେ ବାଜାବ ଜୟ ତୂର ।
ଅଲପନ ଦେୟବ ମୋତିମ ହାର
ମଙ୍ଗଲ କଲସ କରବ କୁଚ ଭାର । ୧ ।
ସହକାର ପଲ୍ଲବ ଚୂଚୁକ ଦେବ
ମାଧବ ସେବ ମନୋରଥ ନେବ ।
ଧୂପ ଦୀପ ନୈବେଦ୍ୟ କରବ ପିୟା ଆଗେ
ଲୋଚନ-ନୀରେ କରବ ଅଭିଷେକେ । ୨ ।
ଅଲିଙ୍ଗନ ଦେୟବ ପିୟା କର ଆଗେ
ଭନୟେ ବିଦ୍ୟାପତି ଇହ ରସ ଭାଗେ ।

---

ଶବ୍ଦାର୍ଥ—ଜୟତୂର=ଜୟତୂରୀ, (୩) ଆଲପନ=ଝୋଟି ବା ଝୁଣ୍ଟି (୩) ଚୂଚୁକ=ସ୍ତନାଗ୍ର (୫) ସହକାର ପଲ୍ଲବ=ଆମ୍ରପଲ୍ଲବ । ( ମୁକ୍ତାହାର ରୂପ ଅଲପନ, କୁଚଭାର ରୂପ ମଙ୍ଗଳ-କଳସ, ଓ ଚୂଚୁକ ରୂପ ସହକାର ପଲ୍ଲବ ଦେବ, ମାଧବକୁ ସେବିବ ଓ ମନୋରଥ ପୂର୍ଣ୍ଣ କରାଇବ ) "ଅତ୍ର ଧୂପଃ ସ୍ୱାଙ୍ଗ-ସୌରଭଃ, ପ୍ରଦୀପୋଽତ୍ର ନିଜାଙ୍ଗକାନ୍ତିଃ, ନୈବେଦ୍ୟ ଉପଭୋଗାତିରେକଃ ଇତି ରାଧାମୋହନଃ (୭) ପ୍ରିୟତମ ସମ୍ମୁଖରେ ଧୂପ, ଦୀପ ଓ ନୈବେଦ୍ୟ ଦେବ; ଏଠାରେ ନିଜର ଅଙ୍ଗ

ସୌରଭ•ଧୂପ, ନିଜର ଅଙ୍ଗକାନ୍ତି ଦୀପ ଓ ଅଧରକ୍ତ ଉପଭୋଗ ନୈବେଦ୍ୟରୂପରେ ଅଭିପ୍ରେତ । (୧୦) ଭାଗେ=ଭାଗ୍ୟତଃ, ଭାଗ୍ୟେନାସ୍ମିଂ ବସୋ ଭବତୀତି” ସୁଧାମୋହନଃ ।

(୬)

ପିୟା ଜବ ଆଓବ ଇ ମଝୁ ଗେହେ
ମଂଗଲ ଜତହୁ କରବ ନିଜ ଦେହେ ।
କନୟା କୁମ୍ଭ ଭରି କୁଚ ଯୁଗ ରାଖି
ଦରପନ ଧରବ କାଜର ଦେଇ ଆଁଖି ।୧।

ବେଦି ବନାଓବ ହମ ଅପନ ଅଂଙ୍ଗମେ
ଝାଡ଼ୁ କରବ ତାହେ ଚିକୁର ବିଛାନେ ।
କଦଲି ରୋପବ ହମ ଗରୁଅ ନିତମ୍ବ
ଆମ ପଲ୍ଲବ ତାହେ କିଂକନ ସୁଝମ୍ପ ।୨।

ଦିସି ଦିସି ଆନବ କାମିନି ଠାଟ
ଚୌଦିସ ପସାରବ ଚାଁଦକ ହାଟ ।
ବିଦ୍ୟାପତି କହେ ପୂରବ ଆସ
ଦୁଇ ଏକ ପଲକ ମିଳବ ତୁଅ ପାସ ।୩।

---

ଶବ୍ଦାର୍ଥ—ଯେତେବେଳେ ପ୍ରିୟତମ ମୋ ଗୃହକୁ ଆସିବ, ସେତେବେଳେ ମୁଁ ନିଜ ଦେହରେ ହିଁ ଯାବତୀୟ ମଙ୍ଗଳାଚାର କରିବି । (୩) କନୟା କୁମ୍ଭ=ସ୍ୱର୍ଣ୍ଣ କଳସ, (୪) କାଜର=କଜ୍ଜ୍ୱଳ । (୫) ବନାବ ନିର୍ମାଣ କରିବି । ଅଙ୍ଗମେ=ଅଙ୍ଗରେ । (୬) ଚିହ୍ନିରେ କେଶରାଶି ସଂପ୍ରସାରଣ ପୂର୍ବକ ଓଳାଇବି । (୭) ରୋପବ=ରୋପିବି । ଗରୁଅ= ଭାରି । (୮) ସୁଝମ୍ପ=ସୁଝମ୍ପ ନଯୁକ୍ତ, ସୁତିମ୍ପନ (୯) ଦିଗାରେ କାମିନୀଙ୍କ ଠାଟ (ଠାଣି) ପ୍ରଦର୍ଶାଇବି । (୧୨) ଦୁଇଏକ ପଲକ ମଧ୍ୟରେ ହିଁ ତୋ ପାଖକୁ କାହ୍ନୁ ଆସିବ ।

(୩)

ଅଁଗନେ ଆଓବ ଜବ ରସିୟା
ପଲଟି ଚଲବ ହମ ଈଷତ ହଁସିୟା ।
ରସ ନାଗରି ରମଣୀ ,
କତ ଜୁଗୁତି ମନହି ଅନୁମାନୀ । ୧ ।
ଅବେସେ ଆଁଚର ପିୟା ଧରବେ
ଜାଏବ ହମ ନାଁ ଜତନ ବହୁ କରବେ ।
କଁଚୁଆ ଧରବ ଜବ ହଠିୟା
କରେ କର ବାଁଧବ କୁଟିଲ ଅଧ ଦିଠିୟା । ୨ ।
ରଭସ ମାଁଗବ ପିଆ ଜବହି
ମୁଖ ମୋଡ଼ି ବିହଁସି ବୋଲବ ନହି ନହି ।
ସହଜହି ସୁପୁରୁଷ ଭ୍ରମରା ,
ମୁଖ କମଲକ ମଧୁ ପୀଅବ ହମରା । ୩ ।
ତଖନ ହରବ ମୋର ଗେଆନେ
ବିଦ୍ୟାପତି କହ ଧନି ଧେଆନେ ।

---

ଶବ୍ଦାର୍ଥ—(୧) ରସିୟା = ରସିକ, (୨) ପଲଟି = ଫେରି, ଈଷତ ହଁସିୟା = ଅଳ୍ପ ହସି, (୪) ଅବେସେ = ତନ୍ମୟଭାବରେ, ଆଁଚର = ଅଞ୍ଚଳ, କାନି, ପଣନ୍ତ, (୯) ପ୍ରିୟତମ ରଭସ—ଭିକ୍ଷା (ବିହାରାର୍ଥ ବିନତି ) କରିବା ମାତ୍ରକେ, ମୁଁ ସହାସ୍ୟ ବଦନରେ 'ନା' ବୋଲି କହିବି । ଯେବେ ସବଳରେ କଞ୍ଚୁଳି ଧରିବ, ତେବେ ତାଙ୍କ ଦୁହାଣି ଗୃହି କରଦ୍ୱାରା କର ନିବାରଣ କରିବି । ପ୍ରଭୁ ସୁପୁରୁଷ-ଭ୍ରମର, ସେ ମୋର ଚିବୁକ ଧରି ଅଧର ମଧୁ ପାନ କରିବ । ତତ୍କ୍ଷଣାତ୍ ମୋର ଚେତନା ହରଣ କରିବ । ବିଦ୍ୟାପତି କହନ୍ତି-ତୋର ଜୀବନ ଧନ୍ୟ ।

( ୪ )

ହାମକ ମନ୍ଦିରେ ଜବ ଆଓବ କାନ
ଦିଠି ଭରି ହେରବ ସେ ଚାନ୍ଦ ବୟାନ ।
ନହି ନହି ବୋଲବ ଜବ ହାମ ନାରୀ
ଅଧିକ ପୀରତି ତବ କରବ ମୁରାରି । ୧ ।

କବେ ଧରି ହାମକ ବୈଠାୟବି କୋର
ଶିରଦନେ ହୃଦୟ ଜୁଡ଼ାୟବ ମୋର ।
କରବ ଆଲିଙ୍ଗନ ହରି ଭରି ମାନ
ଓ ରସେ ପୂରବ ହାମ ମୁଦବ ନୟାନ । ୨ ।
ଭନୟେ ବିଦ୍ୟାପତି ସୁନ ବରନାରି
ତୋହରି ପୀରତିକ ଯାଉ ବଲିହାରି

———

ଶବ୍ଦାର୍ଥ—(୧) ଧରି ଭରି=ଧୃତିକୁ ଧରିରେ, ଅଙ୍ଗପୂରିକ, ବୟାନ=ମୁଖ, (୨)ଜୁଡ଼ାୟବ=ଶୀତଳହେବ ।

(୪)

ଆଓୁ ଗୋକୁଲେ ନନ୍ଦ-କୁମାର
ଆନନ୍ଦ ଟୋଇ କହଇ ଜନ ପାର ।
କି କହବରେ ସଖି ରଜନୀକ କାଜ
ସ୍ୱପନହୁ ହେରନୁ ନାଗର ରାଜ । ୧ ।

ଆଜୁ ସୁଭ ନିସି କି ପୋହାୟନୁ ହାମ
ପାନ ପିୟାରେ କରନୁ ପରନାମ ।
ବିଦ୍ୟାପତି କହେ ସୁନ ବରନାରି
ଧୈରଜ ଧରହୁ ତୋହେ ମିଲବ ମୁରାରି । ୨ ।

———

( ୬ )

ଆଜୁ ରଜନୀ ହାମ ଭାଗ୍ୟେ ପୋହାୟନୁ
ପେଖନୁ ପିୟା ମୁଖ ଚନ୍ଦା ।
ଜୀବନ-ଯୌବନ ସଫଲ କରି ମାନନୁ
ଦସ ଦିସ ଭେଲ ନିରଦନ୍ଦା । ୨ ।

ଅଜୁ ମଝୁ ଗେହ ଗେହ କରି ମାନନୁ
ଅଜୁ ମଝୁ ଦେହ ଭେଲ ଦେହା ।
ଅଜୁ ବିହି ମୋହେ ଅନୁକୂଲ ହୋୟଲ
ଟୁଟଲ ସବହୁ ସନ୍ଦେହ । ୨ ।

ସୋହ କୋକିଲ ଅବ ଲଖ ଡାକଉ
ଲଖ ଉଦୟ କରୁ ଚନ୍ଦା ।
ପାଁଚବାନ ଅବ ଲଖବାନ ହଉ
ମଲୟ ପବନ ବହୁ ମନ୍ଦା । ୩ ।

ଅବ ସେ ନ ଜବହୁଁ ମୋହେ ପରିହୋୟତ
ତବହୁଁ ମାନବ ନିଜ ଦେହା ।
ବିଦ୍ୟାପତି କହ ଅଲପ ଭାଗି ନେହ
ଧନି ଧନି ତୁୟା ନବ ନେହା । ୪ ।

———

ଶବ୍ଦାର୍ଥ—(୨) ପୋହାୟନୁ = ଯାପନ କଲି । (୪) ନିରଦନ୍ଦା = ଦ୍ୱନ୍ଦ୍ୱଶୂନ୍ୟ, ସୁପ୍ରସନ୍ନ, (୫) ଅଜି ମୋର ଗୃହକୁ ଗୃହ ବୋଲି ମଣିଲି । (୯—୧୦) ସେହି କୋକିଳ ଲକ୍ଷ ଲକ୍ଷ ଡାକ ଏବେ ଡାକୁ, ଲକ୍ଷ ଚନ୍ଦ୍ରର ସମୁଦୟ ହେଉ । (୧୧) ପଞ୍ଚବାନ ମଦନ ଏବେ ଲକ୍ଷବାଣ ହେଉ, ସୁମନ୍ଦ ମଲୟ ପବନ ପ୍ରବାହିତ ହେଉ । (୧୩—୧୪) ଏବେ ସେ ନାଥ ଯେତେବେଳେ ଯାଏ ମୋତେ ଛାଡ଼ି ନଯାଏ, ସେତେବେଳ ଯାଏ ମୁଁ ଦେହକୁ ଦେହଜ୍ଞାନ କରିବି । (୧୬) ନବନେହା = ନବପ୍ରଣୟ ।

(୬)

କି କହବ ରେ ସଖି ଆନନ୍ଦ ଓର
ଚିରଦିନେ ମାଧବ ମନ୍ଦିରେ ମୋର ।
ପାପ ସୁଧାକର ଯତ ଦୁଖ ଦେଲ
ପିୟା ମୁଖ ଦରଶନେ ତତ ସୁଖ ଭେଲ । ୧ ।

ଅଁଚଲ ଭରିଯ୍ୱା ଯଦି ମହାନିଧି ପାଇ
ତବ ହାମ ପିୟ୍ୱା ଦୂର-ଦେଶେ ନା ପାଠାଇ ।
ସୀତକ ଓଢ଼ନୀ ପିୟ୍ୱା ଗିରିଷୀର ବା
ବରିଷାକ ଛତ୍ର ପିୟ୍ୱା ଦରିୟ୍ୱାର ନା । ୨ ।
ଭନୟେ ବିଦ୍ୟାପତି ସୁନ ବରନାରି
ସୁଜନକ ଦୁଖ ଦିବସ ଦୁଇ ଚାରି ।

———

ଶବ୍ଦାର୍ଥ—(୧) ଅନନ୍ଦ ଓର=ଅନନ୍ଦର ସୀମା, ସଖି ଲୋ । ଚରମ ସୀମାର ଅନନ୍ଦ କହିବ କଅଣ । (୨) ଚାନ୍ଦନେ=ଚାନ୍ଦନ ପାଇଁ, (୭) ସୀତକ ଓଢ଼ନୀ=ଶୀତ ଋତୁର ଗାତ୍ରାବରଣ । ଗିରିଷୀର= ଗ୍ରୀଷ୍ମକାଳର । ବା=ପବନ । (୮) ବରିଷାକ=ବର୍ଷାକାଳର । ଦରିୟ୍ୱାର=ସମୁଦ୍ରର । ନା=ନୌକା । (୧୦) ସଜ୍ଜନର ଦୁଃଖ ଦୁଇ ଚାରିଦିନ ମାତ୍ର ରହିଥାଏ ।

(୮)

ଦାରୁଣ ଋତୁପତି ଯତ ଦୁଖ ଦେଲ
ହରିମୁଖ ହେରଇତେ ସବ ଦୂର ଗେଲ ।
ଯତହୁଁ ଅଛିଲ ମମ ହୃଦୟକ ସାଧ
ସୋ ସବ ପୂରଲ ପିୟ୍ୱା ପରସାଦ । ୧ ।
ରଭସ ଅଲିଙ୍ଗନେ ପୁଲକିତ ଭେଲ
ଅଧରକ ପାନେ ବିରହ ଦୂରେ ଗେଲ ।
ଚିରଦିନେ ବିହି ଆଜୁ ପୂରଲ ଆସ
ହେରଇତେ ନୟନେ ନାହି ଅବକାସ । ୨ ।
ଭନୟେ ବିଦ୍ୟାପତି ଆର ନାହି ଆଧି
ସମୁଚିତ ଔଷଧେ ନା ରହେ ବେୟାଧି ।

———

ଶବ୍ଦାର୍ଥ—(୮) ଅଖିରେ ଦେଖି ଦେଖି କାଳ କଟି ଯାଉଛି, ଦର୍ଶନ-ବିରତିର ଅବକାଶ ଘଟୁନାହିଁ । (୯) ଆଧି=ମନୋବ୍ୟଥା । (୧୦) ଔଷଧେ=ଔଷଧରେ । ବେୟାଧି=ବ୍ୟାଧି ।

( ୯ )

ଚିରଦିନେ ସୋ ବିହି ଭେଲ ଅନୁକୂଲ, ରେ
ଦୁହୁ ମୁଖ ହେରଇତ ଦୁହୁ ସେ ଅକୁଲ, ରେ ।
ବାହୁ ପସାରିୟା ଦୋହେଁ ଦୋହାଁ ଧରୁ, ରେ
ଦୁହୁଁ ଅଧରାମୃତ ଦୁହୁ ମୁଖ ଭରୁ, ରେ । ୧ ।
ଦୁହୁଁ ତନୁ କାଁପଇ ମଦନ ଉଛଲ, ରେ
କିନ କିନ କିନ ଖିର କଂକନ ଛୁଟଲ, ରେ ।
ଛାଇତେହୁ ସ୍ମିତ ନବ ବଦନ ମିଳଲ, ରେ
ଦୁହୁ ପୁଲକାବଳୀ ସେ ଲହୁ ଲହୁ, ରେ । ୨ ।
ରସ-ମାତଲ ଦୁନୁ ବସନ ଖସଲ, ରେ
ବିଦ୍ୟାପତି ରସ-ସିନ୍ଧୁ ଉଛଲ, ରେ ।

---

ଶବ୍ଦାର୍ଥ—(୪) ଦୁହିଁଙ୍କ ଅଧର—ସୁଧାରେ ଦୁହିଁଙ୍କ ମୁଖ ପୂର୍ଣ୍ଣ ହେଉଛି ।

( ୧୦ )

ଦୌହାର ଦୁଲହ ଦୁହୁ ଦରସନ ଭେଲ
ବିରହ ଜନିତ ଦୁଖ ସବ ଦୂରେ ଗେଲ ।
କରେ ଧରି ବୈସାୟଲ ବିଚିତ୍ର ଆସନେ
ରମୟେ ରତନ ସ୍ୟାମ ରମଣୀ ରତନେ । ୧ ।
ବହୁବିଧ ବିଲସୟେ ବହୁବିଧ ରଙ୍ଗ
କମଲେ ମଧୁପ ଯେଇନ ପାଓଲ ସଙ୍ଗ ।
ନୟାନେ ନୟାନ ଦୋହାଁର ବୟାନେ ବୟାନ
ଦୁହୁଁ ଗୁନେ ଦୁହୁଁ ଗୁନ ଦୁହୁଁ ଜନେ ଗାନ । ୨ ।
ଭନୟେ ବିଦ୍ୟାପତି ନାଗର ଭୋର
ତ୍ରିଭୁବନ ବିଜୟୀ ନାଗରୀ-ଗୈର ।

---

ଶବ୍ଦାର୍ଥ—(୧) ଦୁହେଁ ଦୁହିଁଙ୍କ ପ୍ରତି ଦୁର୍ଲଭ ଦର୍ଶନ, ପାରସ୍ପରିକ ସଂପ୍ରୀତି ଯତ୍ପରୋନାସ୍ତି ପ୍ରଗାଢ଼ ହୋଇଥିବାରୁ ଉଭୟେ ଉଭୟଙ୍କୁ ଅମୂଲ୍ୟ ମଣିଲେ । (୪) ରମୟେ=ରମଣ କରେ । (୯-୧୦) ବିଦ୍ୟାପତି ଭଣନ୍ତି ଯେ ତ୍ରିଭୁବନ ବିଜୟୀ ଓ ନାଗରୀ-ହର ହର ବିଭୋର (ବିହ୍ୱଳ) ହେଲେ ।

( ୧୧ )

ହାଥକ ଦରପନ ମାଥକ ଫୁଲ
ନୟନେ ଅଞ୍ଜନ ମୁଖକ ତାମ୍ବୁଲ ।
ହୃଦୟକ ମୃଗମଦ ଗୀମକ ହାର
ଦେହକ ସରବସ ଗେହକ ସାର । ୧ ।
ପାଖୀକ ପାଖ, ମୀନକ ପାନି
ଜୀବନ ହାମ ତୁହୁ ଜାନି ।
ତୁହୁ କୈସେ ମାଧବ କହବି ମୋୟ
ବିଦ୍ୟାପତି କହ ଦୁହୁ ଦୋହା ହୋୟ । ୨ ।

———

ଅର୍ଥ—ତୁ ହାତର ଦର୍ପଣ, ମଥାର ଫୁଲ, ନୟନର ଅଞ୍ଜନ, ମୁଖର ତାମ୍ବୁଲ, ହୃଦୟର କସ୍ତୁରୀ, ଗଳାର ହାର, ଦେହର ସର୍ବସ୍ୱ, ଗୃହର ସାରକା, ପକ୍ଷୀର ପକ୍ଷ, ମାଛର ଜଳ, ଜୀବର ଜୀବନ, ମୁଁ ତୋତେ ଏହିପରି ଭାବରେ ହିଁ ଜାଣେ । ମାଧବ ତୁ କିଭଳି ଅର୍ଥାତ୍ ତୋର ସ୍ୱରୂପ କଅଣ ? ତୁ ନିଜେ ମୋତେ ଜଣାଇବୁ କି ? ବିଦ୍ୟାପତି କହନ୍ତି, ଉଭୟେ ହିଁ ଉଭୟ, ଅର୍ଥାତ୍ ରାଧା ମୀନ ହେଲେ କୃଷ୍ଣ ଜଳ, ଆଉ କୃଷ୍ଣ ମୀନ ହେଲେ ରାଧା ଜଳ ଇତ୍ୟାଦି ।

( ୧୨ )

ଏସନ ପିୟାର କଥା　　କି ପୁଛସି ରେ ସଖି
ପଖାନ ନାଚୁୟା ତାରେ ଦୟେ ।
ଗଢ଼େଇ କୁଠା ଗାଛୁ　　ପିରେ ଠୋକାଇୟା
ଥଲଇ ବାନ୍ଧଲ ତାର ନୟେ । ୧ ।

ହାତ ଧରି ଧରି ମୁଖାନି ମାଜଇ
ଦିପ ନିଯ଼ା ନିଯ଼ା ଗୃହ ।
ଦରିଦ୍ର ଯେସନ ପାଇଯ଼ା ରତନ
ଥୁଇତେ ଠାଇଁ ନା ପାଯ଼ । ୨ ।
କର୍ପୂର ତାମ୍ବୂଲ ଆପନି ରଚିଯ଼ା
ମୋ'ର ମୁଖ ଭରି ଦେଯ଼ ।
ଚିବୁକ ଧରିଯ଼ା ଈଷତ ହାସିଯ଼ା
ମୁଖେ ମୁଖ ଦିଯ଼ା ଲେଯ଼ । ୩ ।
ହିଯ଼ାର ଉପରେ ସୋଯ଼ାଇଯ଼ା ମୋରେ
ଅବସ ହଇଯ଼ା ରଯ଼ ।
ତାହାର ପୀରତି ତୋହାର ଏ ମତି
କବି ବିଦ୍ୟାପତି କଯ଼ । ୪ ।

---

ଶବ୍ଦାର୍ଥ—(୨) ନିଛୁଯ଼ା = ନ୍ଲଣି. ଦସ୍ସେ = ଦାନ କରେଁ, (୩-୪) ମସ୍ତକରେ କୁଟା ଛୁଆଁଇବା, ଅଙ୍ଗୁଳି ଦଂଶନ କରିବା ଓ ଈଦୃଶ ଅନ୍ୟାନ୍ୟ ସ୍ତ୍ରୀଆଚରଣ ଦ୍ୱାରା ନାରୀମାନେ ପ୍ରିଯ଼ଜନର ବିପଦ ବାରଣ ବାଞ୍ଛା ପ୍ରକଟ କରୁଥିଲେ । ବର୍ତ୍ତମାନ ଏହି ସମସ୍ତ ପ୍ରଥାର ପାଳନ ମଧ୍ୟ ଅନେକତ୍ର ପରିଲକ୍ଷିତ ହୁଏ । ଏହି ପଦରେ କୁଟା ଛୁଆଇଁ ପ୍ରିଯ଼ଜନକୁ ବିପନ୍ମୁକ୍ତ କରିବାର ଅଭିଳାଷ ବର୍ଣ୍ଣିତ । (୫) ମୁଖାନି = ମୁହଁଟି । ( ୧୫-୧୬ ) ତାର ପ୍ରୀତି ତୋ ପାଖରେ ଇମିତି ବୋଲି କବି ବିଦ୍ୟାପତି କହନ୍ତି ।

( ୧୩ )

ସଖି. କି ପୁଛସି ଅନୁଭବ ମୋଯ଼,
ସେ ହୋ ପିରିତି ଅନୁରାଗ ବଖାନଏ
ତିଲ ତିଲ ନୂତନ ହୋଯ଼ । ୧ ।
ଜନମ ଅବଧି ହମ ରୂପ ନିହାରଲ
ନଯ଼ନ ନ ତିରପିତ ଭେଲ ।
ସେ ହୋ ମଧୁ ବୋଲ ସବନହି ସୁନଲ
ଶ୍ରୁତି-ପଥ ପରସ ନ ଭେଲ । ୨ ।

କତ ମଧୁ ଯାମିନୀ ରଭସ ଗମାଓଲି
ନ ବୁଝଲି କଇସନ କେଲି ।
ଲାଖ ଲାଖ ଯୁଗ ହିୟେ ହିୟା ରାଖଲି
ତବୁ ହିୟ ଜୁଡ଼ଲ ନା ଗେଲି । ୩ ।
କତ ବିଦଗଧ ଜନ ରସ ଅନୁମୋଦଇ
ଅନୁଭବ କାହୁ ନ ପେଖ ।
ବିଦ୍ୟାପତି କହ ପ୍ରାନ ଜୁଡ଼ାଏତି
ଲାଖେ ନ ମିଲଲ ଏକ । ୪ ।



ଅର୍ଥ—ସଖି ଲୋ ! ଅନୁଭୂତ ( ପ୍ରେମୋପଲବ୍ଧି ) ବିଷୟରେ ମତେ ପଚାରୁଛୁ କଅଣ ? (୨-୩) ବର୍ଣ୍ଣନା କରିବାକୁ ଗଲେ ସେହି ପ୍ରୀତ୍ୟନୁରାଗ ପ୍ରତି ନିମେଷରେ ନୂତନ ହୋଇ ଉଠେ, ଅର୍ଥାତ୍ ପ୍ରତି ମୁହୂର୍ତ୍ତରେ ପୂର୍ବାପେକ୍ଷା ମଧୁରତର ଓ ଅନଭୂତ ରୂପରେ ଅଧିକତର ସୁଖଦ ବୋଲି ମନେ ହୁଏ । (୪-୭) ଆଜନ୍ମରୁ ସେହି ରୂପ ଦେଖି ଆସୁଛି, କିନ୍ତୁ ନୟନ ପରିତୃପ୍ତ ହୋଇନାହିଁ, ଅର୍ଥାତ୍ ଦର୍ଶନାକାଂକ୍ଷା ମେଣ୍ଟିନାହିଁ । ସେହି ମଧୁର ସ୍ୱର ଆଜନ୍ମରୁ ଶ୍ରବଣରେ ଶୁଣି ଆସୁଛି, କିନ୍ତୁ ସେହି ବଚନ (ସ୍ୱର) ଦ୍ୱାରା ଶ୍ରୁତିପଥ ସ୍ପୃଷ୍ଟ ହୋଇ ନାହିଁ । ଅର୍ଥାତ୍ ଏହିପରି ଅନୁଭୂତି ଜନ୍ମୁଛି ଯେ ସେହି ସ୍ୱର ଅଦ୍ୟାବଧି ଶୁଣି ପାରିନାହିଁ, ଏବଂ ତାହା ଶୁଣିବାକୁ ହିଁ ହେବ । (୮) ରଭସେ=ଆନନ୍ଦ, ବିଲାସ ରେ, ଗମାଓଲି=ଯାପନ କଲି । (୯) କଇସନ=କିପରି, (୧୦) ଲାଖ ଲାଖ=ଲକ୍ଷ ଲକ୍ଷ, ହିୟା=ହୃଦୟରେ, (୧୧) ଜୁଡ଼ଲ ନ ଗେଲି=ଶୀତଳ ହେଲା ନାହିଁ । (୧୩) କାହାର ସୁଖ ଉପଲବ୍ଧି ହୋଇଥିବାର ଦେଖି ପାରିଲି ନାହିଁ । (୧୫) ଲକ୍ଷ ଲକ୍ଷ ଲୋକଙ୍କ ମଧ୍ୟରେ ଜଣେ ସୁଦ୍ଧା ମିଳିଲା ନାହିଁ ।

( ୧୪ )

ସୁନ ସୁନ ମାଧବ କି କହବ ଆନ
ତୁଲନା ଦିତେ ନାହି ପୀରତି ସମାନ ।
ପୂରବକ ଭାନୁ ଯଦି ପଚ୍ଛିମେ ଉଦୟ
ସୁଜନକ ପୀରିତି କବହୁ ଦୂର ନୟ । ୧ ।

ଷିତି ତଳେ ଲିଖି ଯଦି ଆକାସକ ତାରା
ଦୁଇ ହାତେ ସଞ୍ଚି ଯଦି ସିନ୍ଧୁକ ଧାରା ।
ଭନଇ ବିଦ୍ୟାପତି ଶିବସିଂହ ରାଏ
ଅନୁଚିତ ଜନହୁଁ ଛାଡ଼ିତେ ନା ଜୁଆଏ । ୨ ।

---

ଶବ୍ଦାର୍ଥ—(୧) ଅନ=ଅନ୍ୟ. (୬) ପୂରବକ=ପୂର୍ବଦିଗର, (୭) ସିନ୍ଧୁକଧାରା=ସମୁଦ୍ର ଜଳରାଶି, (୮) ଜୁଆଏ=ଯୋଗ୍ୟ ହୁଏ, ବିଧେୟ ହୁଏ ବା ସମୁଚିତ ହୁଏ ।

( ୧୬୪ )

ଅକୁଲ ଅଲକ ବେଢ଼ଲ ମୁଖ ସୋଭା
ରାହୁ କଏଲ ସସିମଣ୍ଡଲ ଲୋଭା ।
କୁନ୍ତଲ କୁସୁମ ମାଲ କରୁ ସଙ୍ଗ
ଜନୁ ଜମୁନା ଜଲେ ଗଙ୍ଗତରଙ୍ଗ । ୧ ।
ବଡ଼ ଅପରୂପ ଦୁହେ ଅଚେତନ ଭେଲ
ବିପରୀତ ରତି କାମିନୀ କରୁ କେଲି ।
ପ୍ରିୟ ମୁଖେ ସୁମୁଖି ଚୁମ୍ବୟେ ଏକ
ଚାଁଦ ଅଧୋମୁଖେ ପିବଇ ସରୋଜ । ୨ ।
ବଦନ ସୋହାଗଲ ସ୍ରମ ଜଲ ବିନ୍ଦୁ
ମଦନ ମୋତି ଲେଇ ପୂଜଲ ଇନ୍ଦୁ ।
କୁଚଯୁଗ ଉପର ବିଲସିତ ହାର
କନକ କଲସ ପର ସୁରଧୁନୀ ଧାର । ୩ ।
କଙ୍କିଣୀ ରବୟେ ନିତମ୍ବହ ସାଜ
ମଦନ ବିଜୟେ ରନ ବାଜନ ବାଜ ।
ଭନଇ ବିଦ୍ୟାପତି ରସବତୀ ନାରୀ
କାମ କଲ୍ପ ଜନ ବଚନ ହାମାରି । ୪ ।

---

ଅର୍ଥ—ଆକୁଳ ଅଳକଦାମ ଅର୍ଥାତ୍ ଉନ୍ମୁକ୍ତ ଓ ଉଚ୍ଛ୍ୱସିତ କେଶରାଶି ମୁଖଶ୍ରୀକୁ ଏପରି ଭାବରେ ବେଷ୍ଟନ କରି ରହିଛନ୍ତି, ଯେପରିକି ଶଶିମଣ୍ଡଳଂଲବ୍‌ଧ ରାହୁ ନିଜ ସଂସ୍ପର୍ଶ ଦ୍ୱାରା ଚନ୍ଦ୍ରକୁ ଅଧିକତର ଲୋଭନୀୟ କରୁଛନ୍ତି । କୁସୁମ-ମାଳ ଯୁକ୍ତ କୁନ୍ତଳ ଦେଖିଲେ ମନେହୁଏ ଯେପରି କି ଗଙ୍ଗାର ତରଙ୍ଗରେ ଯମୁନାର ଜଳ ଆସି ମିଶିଛି । କାମିନୀ ବିପରୀତ ବିଳାସରେ ମାତିଲା ସମୟରେ ନାଗର ଓ ସେ ଅଚେତନ ହେବାଟା ବଡ଼ ଅପରୂପ ପ୍ରସଙ୍ଗ ଅଟେ । ( ଅଚେତନ ହେବାର ଅର୍ଥ ଏହାହିଁ ଯେ ଉଭୟେ ଏକାନ୍ତ ଅସ୍ଵବସ୍ଥିତ ହୋଇଥିବାରୁ ନିଜ ନିଜର ସତ୍ତ୍ୱ ଓ ସ୍ୱାତନ୍ତ୍ର୍ୟ ସମ୍ବନ୍ଧରେ ଅଣୁମାତ୍ର ସଚେତନ ନ ଥିଲେ ) । ସୁମୁଖୀ ପତି ମୁଖଚନ୍ଦ୍ରକୁ ଯେପରି କି ଚୁମ୍ବନ କରୁଛନ୍ତି, ତାହା ଅଧୋମୁଖ ହୋଇ ଚନ୍ଦ୍ର ପଦ୍ମ ( ମଧୁ ) ପାନ କରିବା ସଦୃଶ । "ପ୍ରିୟମୁଖାବ୍‌ଜଂ ସମ୍ମୁଖୀ ସତି ପିବତି," ତଥା ଅବ୍ଜାବ୍‌ଜ ଇତ୍ୟସ୍ୟ ଦେଶାନ୍ତରୀୟ ଭାଷା 'ଓଜ' ଇତି ରାଧାମୋହନଃ । 'ଅବ୍‌ଜ' ଶବ୍ଦର ଅର୍ଥ ଏଠାରେ ଚନ୍ଦ୍ର । ରାଧାକୃଷ୍ଣ ଅପ୍ରାକୃତ ପ୍ରେମମୂର୍ତ୍ତି, ସୁତରାଂ ଏବଂବିଧ ରୂପକର ସମାଶ୍ରୟ କବିଙ୍କ ପକ୍ଷରେ ସମୁଚିତ । (୯-୧୬) ଶ୍ରମଜଳ ବିନ୍ଦୁ ବଦନରେ ଈଦୃଶ ସୁଶୋଭିତ ହେଲା, ଯେପରି କନ୍ଦର୍ପ ମୁକ୍ତା ଦ୍ୱାରା ଚନ୍ଦ୍ର ପୂଜନ କଲା । ରାଇର ସ୍ତନଯୁଗୋପରି ବିଲମ୍ବିତ ହାର କନକକଳସୋପରି ମନ୍ଦାକିନୀ ଧାରା ସଦୃଶ ହୋଇଥିଲା । ନିତମ୍ବଶୋଭୀ କିଙ୍କିଣୀର ନିନାଦ ମଦନର ବିଜୟ କାଳୀନ ରଣବାଦ୍ୟବତ୍ ଶୁଭୁଥିଲା । ବିଦ୍ୟାପତି କହନ୍ତି—ରସବତୀ ନାରୀ ରାଇର କାମକଳା ବର୍ଣ୍ଣନାରେ ଅଁପଣ୍ଡୀୟସୀ ହୋଇ ମୋର ବାଣୀ ପରାଜୟ ସ୍ୱୀକାର କରୁଛି ।

---

## ସ୍ତୁତି—ସ୍ତୋତ୍ର

---

( ୧ )

କତନେ କତେକ ଧନ ପାପେ ବଟୋରଲି
ମିଲି ମିଲି ପରିଜନ ଖାୟ ।
ମରନକ ବେରି ବେରି କୋଇ ନ ପୁଛୟେ
କରମ ସଙ୍ଗେ ଚଲି ଜାୟ । ୧ ।

"ଏ ହରି, ବନ୍ଦୌ" ତୁଅ ପଦ ନାୟ
ତୁଅ ପଦ ପରି ହରି ପାପ-ପୟୋନିଧି,
ପାରକ କଓନ ଉପାୟ । ୨ ।
ଜାବତ ଜନମ ନହି ତୁଅ ପଦ ସେ ବନୁ
ଜୁବତୀ ମତି ମଯଁ ମେଲି ।
ଅମୃତ ତଜି ହଲାହଲ କାଏ ପୀଅଲ
ସମ୍ପଦ ଅପଦହି ଭେଲି । ୩ ।
ଭନଇ ବିଦ୍ୟାପତି ନେହ ମନେ ଗନି
କହଲ କି ବାଢ଼ବ କାଜେ ।
ସାଁଝକ ବେର ସେବକାଇ ମଁଗଇତ
ହେରଇତେ ତୁଅ ପଦ ଲାଜେ । ୪ ।

---

ଅର୍ଥ—ସଂସାରରେ ମୁଁ ଯେତେକ ଧନ ପାପ ଦ୍ୱାରା ସଞ୍ଚୟ କରିଛି, ତାକୁ ପରିଜନବର୍ଗ ସମ୍ମିଳିତ ହୋଇ ଉପଭୋଗ କରୁଛନ୍ତି । ପ୍ରାଣ-ପ୍ରୟାଣ ସମୟରେ ଏମାନେ କେହି ପଚାରନ୍ତି ନାହିଁ, କେବଳ କର୍ମ ସଙ୍ଗରେ ଯାଏ । ହେ ହରେ ! ହେ ବନ୍ଧୋ ! ତୋର ଶ୍ରୀପଦ ହେଉଛି ନୌକା । ତୋର ପଦ ପରିହାର କରି ପାପ-ପୟୋନିଧି ପାରି ହେବି କି ଉପାୟରେ ? ଅଜନ୍ମରୁ ମୁଁ ତୋର ଚରଣ ସେବା ନ କରି ରହିଲି । ମନୋରାଜ୍ୟ ଯୁବତୀ-ରଞ୍ଜନ ପାଇଁ ଉନ୍ମୁକ୍ତ ରଖିଲି । ଅମୃତ ପରିତ୍ୟାଗ କରି, ଏ କି ହଳାହଳ ପାନ କଲି ! ସମ୍ପଦ ମଧ୍ୟ ବିପଦରେ ପରିଣତ ହେଲା । ବିଦ୍ୟାପତି କହନ୍ତି ଯେ, ସ୍ନେହ ( ପ୍ରଭୁ-ବାତ୍ସଲ୍ୟ ) ମନରେ ପ୍ରଭୁଙ୍କୁ ସ୍ମରଣ କଲେ ଅବା କାର୍ଯ୍ୟ ହୋଇପାରେ. ( ଜୀବନର ) ସାୟାହ୍ନରେ ସେବା କିଏ ଗୃହେ ? ତୋର ଚରଣ ଦେଖିବାକୁ ମଧ୍ୟ ଲଜ୍ଜା ବୋଧ ହେଉଛି ।

( ୬ )

ତାତଲ ସୈକତ ବାରି-ବିନ୍ଦୁ ସମ
ସୁତ, ମିତ, ରମନି, ସମାଜ ।
ତୋହେ ବିସାରି ମନ ତାହେ ସମରପିନୁ
ଅବ ମଝୁ ହବ କୌନ କାଜ । ୧ ।

ମାଧବ, ହମ ପରିନାମ ନିରସା
ତୁହୁ ଜଗ ତାରନ ଦୀନ ଦୟାମୟ
ଅତୟ ତୋହରି ବିସବାସା । ୨ ।
ଆଧ ଜନମ ହମ ନୀଂଦ ଗମାୟନୁ
ଜରା ସିସୁ କତ ଦିନ ଗେଲା ।
ନିଧୁବନ ରମନି-ରଭସ ରଙ୍ଗ ମାତନୁ
ତୋହେ ଭଜବ କୌନ ବେଲା । ୩ ।
କତ ଚତୁରାନନ ମରି ମରି ଜାଓତ
ନ ତୁଅ ଆଦି ଅବସାନ ।
ତୋହେ ଜନମି ପୁନ ତୋହେ ସମାଓତ
ସାଗର ଲହରି ସମାନା । ୪ ।
ଭନହି ବିଦ୍ୟାପତି ସେଷ ସମନ ଭୟ
ତୁଅ ବିନ ଗତି ନହି ଆରା ।
ଆଦି ଅନାଦିକ ନାଥ କହାଓସି
ଅବ ତାରନ ଭାର ତୋହାରା । ୫ ।

---

ଅର୍ଥ—ଉତ୍ତପ୍ତ ବାଲୁକାରାଶିରେ ବାରି ବିନ୍ଦୁ ସମ ସୁତ-ମିତ୍ର ରମଣୀ ସମାଜ କ୍ଷଣସ୍ଥାୟୀ । ତୋତେ ବିସ୍ମୃତ ହୋଇ ବା ଛାଡ଼ି, ଏହି ସମାଜକୁହିଁ ମୁଁ ମନ ସମର୍ପଣ କଲି । ଏବେ ମୋର କେଉଁ କାର୍ଯ୍ୟ ହେବ ? ମାଧବ ! ମୁଁ ପରିଣାମ ସମ୍ପର୍କରେ ଅଶାହୀନ,—ତୁ ଜଗତାରଣ, ଦୀନ-ଦୟାମୟ, ଅନ୍ତରରେ କେବଳ ତୋହରି ଭରସା ରହିଛି । ଜୀବନର ଅର୍ଦ୍ଧାଂଶ ମୁଁ ନିଦ୍ରାରେ ବ୍ୟୟିତ କଲି, ଶୈଶବ ଓ ବାର୍ଦ୍ଧକ୍ୟରେ କେତେଦିନ ଚାଲିଗଲା । ନିଧୁବନରେ (ଭୋଗ-ବିଳାସରେ ) ଓ ରମଣୀ-ରସଂ-ରଙ୍ଗରେ ମାତିଲି,ତୋତେ ଅବା ଭଜନ୍ତି କେତେବେଳେ । କେତେ ଚତୁରାନନ (ବ୍ରହ୍ମା) ମରି ମରି ଯାଅନ୍ତି । କିନ୍ତୁ ତୋର ଆଦି ନାହିଁ କି ଅବସାନ ସୁଦ୍ଧା ନାହିଁ । ବ୍ରହ୍ମାଦି ତୋହରଠାରୁ ଜନ୍ମ ଲଭି ତୋହରି ମଧ୍ୟରେ ବିଲୀନ ହୁଅନ୍ତି । ବିଦ୍ୟାପତି କହନ୍ତି—ଯେ ଶେଷ ଶମନ-ଭୟ କାଳରେ ତୋ ବ୍ୟତୀତ ଅନ୍ୟ ଗତି ନାହିଁ । ତୁ ଅନାଦିର ମଧ୍ୟ ଆଦି ସ୍ୱରୂପ ବୋଲାଉ, ଏବେ ତାରଣ-ଭାର ତୋ ଉପରେ ରହିଛି ।

( ୩ )

ମାଧବ, ବହୁତ ମିନତି କର ତୋୟ
ଦଏ ତୁଲସୀ ତିଲ ଦେହ ସମର୍ପିନୁ
ଦୟା ଜନି ଛାଡ଼ବି ମୋୟ । ୧ ।
ଗନଇତ ଦୋସର ଗୁନ ଲେସନ ପାଓବି
ଜବ ତୁହୁଁ କରବି ବିଚାର ।
ତୁହୁ ଜାଗତ ଜଗନାଥ କହ ଓସି
ଜଗ ବାହିର ନଇ ଛାର । ୨ ।
କିଏ ମାନୁସ ପସୁ ପଖି ଭଏ ଜନମିଏ
ଅଥବା କୀଟ ପତଙ୍ଗ ।
କରମ ବିପାକ ଗତାଗତ ପୁନୁ ପୁନୁ
ମତି ରହ ତୁଅ ପରସଙ୍ଗ । ୩ ।
ଭନଇ ବିଦ୍ୟାପତି ଅତିସୟ କାତର
ତରଇତ ଇହ ଭବ-ସିଂଧୁ ।
ତୁଅ ପଦ-ପଲ୍ଲବ କରି ଅବଲମ୍ବନ
ତିଲ ଏକ ଦେହ ଦୀନବନ୍ଧୁ । ୪ ।

ଅର୍ଥ—ମାଧବ ! ତୋତେ ଅଜସ୍ର ମିନତି ଜଣାଉଛି, ତିଳ ଓ ତୁଳସୀ ଦେଇ ଏ ଦେହ ସମର୍ପଣ କଲି, ମୋତେ ଯିମିତି ଦୟାରୁ ବଞ୍ଚିତ ନ କରୁ । ଜଗତରେ ତୁ ଜଗନ୍ନାଥ ବୋଲାଉଛୁ, ଛାର ମୁଁ ଜଗତରୁ ବାହାର ନୁହେଁ ଅର୍ଥାତ୍ ତୁଚ୍ଛାତି ତୁଚ୍ଛ ହେଲେହେଁ, ତୋତେ ଡାକିବାର ଅଧିକାର ମୋର ଅଛି । ତୁ ଯେବେ ବିଚାର କରୁ ତେବେ ଦୋଷ ଗଣୁ ଗଣୁ ଗୁଣର ଲେଶମାତ୍ର ( ମୋଠାରେ ) ପାଇବୁ ନାହିଁ । କି ମନୁଷ୍ୟ, କି ପଶୁପକ୍ଷୀ, କି କୀଟ-ପତଙ୍ଗ, ଯେ କୌଣସି ରୂପରେ ଜନ୍ମ ପରିଗ୍ରହ କରେ ନା କାହିଁକି, କର୍ମ ବିପାକରେ ପୁନଃ ପୁନଃ ଗମନାଗମନ ହେଲେ ଯେପରି ତୋ ପ୍ରସଙ୍ଗରେ ମୋର ମତି ରହେ । ଏହି ଭବ-ସିନ୍ଧୁ ତରଣ-ନିମିତ୍ତ ସାତିଶୟ କାତର ବିଦ୍ୟାପତି ଭଣେ, ତୋହର ପଦପଲ୍ଲବ ହିଁ ଅବଲମ୍ବନ । ଦୀନବନ୍ଧୋ ! ନିମେଷକ ପାଇଁ ପଦପଲ୍ଲବ ପ୍ରସାରଣ କର ।

———

## ଅପରାପର ପଦାବଳୀ

### ଜଳଧର

( ଧନାଶ୍ରୀରାଗ )

( ୧ )

ହେ ହେ ଜଳଧର ସହଜହିଁ ଜଳରାଜ ।
ହମେ ଚାତକ ଜଳବିନ୍ଦୁକ କାଜ । ୧ ।
ନିଜଦୟ ଜଲଦ ଜୀବ ମୋର ରାଖ ।
ଅବସରେ ଦେଲେ ସହସ ହୋ ଲାଖ । ୨ ।
ତନୁ ଦେଅ ଚାନ୍ଦ ରାହୁ କର ପାନ ।
ତୈଁହ କଲା ନାହିଁ ହୋଯ ମଲାନ । ୩ ।
ଭଣଇ ବିଦ୍ୟାପତି ଜଳଦ ଉଦାର ।
ଜୀବନ ଦଏ ପାଲଥି ସଂସାର । ୪ ।

———

ଅର୍ଥ—ତୁ ଜଳଧର, ସହଜରେହିଁ ଜଳେଶ୍ୱର, ମୁଁ ଚାତକ, ମୋର କେବଳ ବିନ୍ଦୁଏ ଜଳରେହିଁ କାର୍ଯ୍ୟ । ଜଳଦ ! ଜଳ ଦେଇ ମୋର ଜୀବନ ରକ୍ଷା କର । ଉପଯୁକ୍ତ ଅବସର କାଳରେ ଦାନ କଲେ, ସହସ୍ର ସଂଖ୍ୟ ଲକ୍ଷରେ ପରିଣତ ହୁଏ । ( ଅର୍ଥାତ୍ ସୁଅବସରରେ ଏକଗୁଣ ଦେଲେ ଶତଗୁଣ ଫଳ ହୁଏ ) । ଚନ୍ଦ୍ର ତନୁ ଦାନ କରେ, ରାହୁ ପାନ କରେ, ତଥାପି ଚନ୍ଦ୍ରର କଳା ମ୍ଳାନ ହୁଏ ନାହିଁ । ବିଦ୍ୟାପତି କହନ୍ତି—ଉଦାର ଜଳଦ, ଜୀବନ ଦାନ ପୂର୍ବକ ସଂସାର ପାଳନ କରୁଛି ।

( ୨ )

### ମଦନ

( ରାଗ—ଯୋଗିୟା-ମାଳବ )

କତନ ବେଦନ ମୋହେ ଦେଇହେ ମଦନା ।
ହର ନହି ବୋଲା ମୋହେ ଯୁବତୀ ଜନା । ୧ ।

ନହି ମୋହି ଜଟାଜୂଟ ଚିକୁରକ ବେଣୀ ।
ଥିର ସୁରସରି ନହି କୁସୁମକ ସେଣୀ । ୨ ।

ଗୃନ ତିଲକ ମୋହି ନହି ଇନ୍ଦୁ ଗୋଟା ।
ଲଲାଟ ପାବକ ନହି ସିନ୍ଦୁରକ ଫୋଟା । ୩ ।

କଣ୍ଠ ଗରଲ ନହି ମୃଗମଦ ଗୃନ୍ଥ ।
ଫଣିପତି ମୋର ନାହି ମୁକୁତା ହାରୁ । ୪ ।

ଭନଇ ବିଦ୍ୟାପତି ସୁନୁ ଦେବ କାମା ।
ଏକ ଦୋସ ଅଛ ଓହି ନାମକ ବାମା । ୫ ।

---

ଅର୍ଥ—ହେ ମଦନ ! ମୋତେ କେତେ ବେଦନା ନ ଦେଉଛୁ ! ମୋତେ ହର ମଣିବୁ ନାହିଁ, ମୁଁ ଯୁବତୀ ଜନ । ମୋର ଜଟାଜୂଟ ନାହିଁ, ଚିକୁରର ବେଣୀ ମାନ ରହିଛି । ଅଚଞ୍ଚଳା ସୁରସରି ତା ( ଗଙ୍ଗା ) ନାହିଁ, କୁସୁମ ଶ୍ରେଣୀ ରହିଛି । ମୋର ଚନ୍ଦ୍ର-ତିଳକ ( ଚନ୍ଦ୍ରାଙ୍କିତ ତିଳକ ) ରହିଛି, ଏହା ଚନ୍ଦ୍ର ନୁହେ । କଣ୍ଠରେ ଗରଳ ନୁହେଁ, ଗୃନ୍ଥ ମୃଗମଦ ଓ ମସ୍ତକରେ ସର୍ପପତି ନୁହେଁ, ମୁକ୍ତା ହାର ଅଛି । ବିଦ୍ୟାପତି କହେ— ଏହାର ଗୋଟିଏ ଦୋଷ ଅଛି—ଏହାର ନାମ ମଧ୍ୟ ବାମା । ( ଶିବଙ୍କ ନାମ ମଧ୍ୟ ବାମଦେବ, ସଂକ୍ଷେପରେ ବାମ, ମୈଥିଲୀ ଭାଷାରେ ସାଧାରଣତଃ କହିବା ସମୟରେ ଅକାରାନ୍ତ ନାମ ସବୁ ଆକାରାନ୍ତ କରି ନିଆ ହୁଏ, ଯଥା ଦେବ—ଦେବା, ମଦନ—ମଦନା, ବାମ—ବାମା ଇତ୍ୟାଦି )

( ୩ )

## ସୁନ୍ଦରୀ—ସଂଦର୍ଶନ

( ରାଗ—ମାଧବୀ, ବରାଡ଼ୀ )

ସଜନ ପରସ ଖସୁ ଅମ୍ବର ରେ
ଦେଖଲି ଧନୀ ଦେହ
ନବ ଜଲଧର ତରେଁ ସଞ୍ଚର ରେ
ଜନ ବିଜୁରି ରେହ । ୧ ।

ଅଜ ଦେଖଲ   ଧନି ଜାଇତ ରେ
ମୋହି ଉପଜଲ ରଙ୍ଗ ।
କନକ ଲତା   ଜନୁ ସଞ୍ଚର, ରେ
ମହି ନିର ଅବଲମ୍ବ । ୨ ।
ତା ପୁନ ଅପ-   ରୁବ ଦେଖଲ, ରେ
କୁଚଯୁଗ ଅରବିନ୍ଦ ।
ବିଗସିତ ନହି   କିଯୁ କାର ନୈ, ରେ
ସୋଙ୍ଗା ମୁଖ-ଚନ୍ଦ । ୩ ।
ବିଦ୍ୟାପତି କବି   ଗାଓଲ, ରେ
ରୁଝହ ରସବନ୍ତ ।
ଦେବ ସିଂହ   ନୃପ-ନାଗର, ରେ
ହାସିନି ଦେଇ କନ୍ତ । ୪ ।

---

ଅର୍ଥ—ପବନ ସଂସ୍ପର୍ଶରେ ବସନ ଖସିଲା, ସୁନ୍ଦର ଦେହ ଦେଖିଲି, ଯେପରି କି ନବଜଳଧରର ନିମ୍ନରେ ବିଦ୍ୟୁତ୍‌ରେଖା ସଞ୍ଚାରିତ ହେଲା, ଆଜ ସୁନ୍ଦରୀକୁ ଯାଉଥିବାର ଦେଖିଲି, ମୋର କାମ ବିକାର ଜନ୍ମିଲା, ( ମନେ ହେଲା ) ଯେପରି କି ବିନା ଅବଲମ୍ବନରେ କନକଲତା ଭୂତଳରେ ବିଚରଣ କରୁଛି । ପୁଣି ତାର ଅପରୂପ କୁଚଯୁଗାରବିନ୍ଦ ( ପଦ୍ମସମ ସ୍ତନ-ଯୁଗଳ ) କୁ ଦେଖିଲି, ଏହି ପଦ୍ମଯୁଗଳ ଅବିକସିତ, ମୁଖଚନ୍ଦ୍ର ଦେଖିବାରୁ କଣ ଏହି ଅବକାଶ, ବିଦ୍ୟାପତି କବି ଗାଇଲେ, ରସବନ୍ତ ବୁଝି ନିଅ । ନାଗର ନୃପ ଦେବସିଂହ ହାସିନୀ ଦେଈର ( ଦେବୀର ) ପ୍ରିୟ ।

ବସନ୍ତ ( ଶିବଗୀତ )

( ୪ )

ଭୋଳେ କମଣ୍ଡଲ ହେ ତ୍ରୈଲୋକ ନାଥ ।
ନାଢେ ଉଗାରଅ ନାଡି ଉସମ ସାଥ । ୧ ।
ପାଟ-ପଟାମ୍ବର ଧରୁ ଉତାର ।
ବାଘଛାଲ ନାଢ ପହିରୁ ସାର । ୨ ।

ବୁଝିଅ ଲଗି ଚଢ଼ୁ ବସହା ପୀଠେ
ଲଜ ମରିଅଜୌ ହେରିଅ ପୀଠି । ୩ ।
ଭନଇ ବିଦ୍ୟାପତି ସୁନହ ଗୌରି ।
ହର ନହି ଜମଲା ତୋହରି ଭୋରି । ୪ ।

---

ଅର୍ଥ—ହେ ନୈଲୋକ୍ୟନାଥ ! ତୁ କାହିଁକି ଉନ୍ମତ୍ତ ଭାବରେ ନିତ୍ୟ ଉଲ୍ଲଗ୍ନ ରହୁ ? ଉସ୍ମ ତୋର ନିତ୍ୟ ସହଚର କାହିଁକି ? ପାଟ-ପୀତାମ୍ବର ଖୋଲି ରଖୁ, ସର୍ବଦା ବାଘଛାଲ ରୂପ ବସ୍ତ୍ର ପିନ୍ଧୁ । ଅଶ୍ୱାରୋହଣ ପରିବର୍ତ୍ତନରେ ବଳଦ ପୃଷ୍ଠରେ ଚଢ଼ୁ, ଯେତେବେଳେ ତୋ ଉପରେ ଦୃଷ୍ଟି ପଡ଼େ ସେତେବେଳେ ଲଜରେ ମରେଁ । ବିଦ୍ୟାପତି ଭଣନ୍ତି— "ଗୌରି, ଶୁଣ, ହର ଉନ୍ମତ୍ତ ନୁହେଁ, ତୁହି ବାଉଳୀ" ।

## ଶିବ-ସଂବେଦନ

ବେରି ବେରି ଅରେ ଶିବ ମୋଏଁ ତୋଏଁ ବୋଲୌ
ଫିରସି କରିଅ ମନ ମାୟ ।
ବିନ ସଙ୍କର ହର ଭିଖିଏ ଯୌ ମାଗିଅ
ଗୁନ ଗୌରବ ଦୂର ଯାୟ । ୧ ।
ନିରଧନ ଜନ ବୋଲି ସବ ଉପହାସୟ
ନହି ଆଦର ଅନୁକମ୍ପା ।
ତୌହେଁ ସିବ ଅଛ ଧତୁର ଫୂଲ ପାଓଲ
ହରି ପାଓଲ ଫୂଲ ଚମ୍ପା । ୨ ।
ଖଟଙ୍ଗ କାଟି ହର ହର ଜେ ବନାବିଅ
ତ୍ରିସୁଲ ଭଙ୍ଗାଏ କରୁ ଫାରେ ।
ବସହା ଧୁରନ୍ଧର ହର ଲଏ ଜୋତିଅ
ପାଏଟ ସୁରସରି ଧାରେ । ୩ ।
ଭନଇ ବିଦ୍ୟାପତି ସୁନ ହେ ମହେସର
ଇ ଲଗି କଇଲ ତୁଅ ସେବା ।
ଏତୟ ଯେ ବରୁ ସୋ ବରୁ ହୋଅଲ
ଓତୟ ଯାବ ନ ମୋର ଦେବା । ୪ ।

---

ଅର୍ଥ—ଶିବ ! ବାରମ୍ବାର ମୁଁ ତୋତେ କହୁଛି, ଆଉ ତୁ ଏକଥା ମନରେ ଧରି ବୁଲୁଛୁ । ଶଙ୍କର ! ହର ! ଏକଥା ଜାଣିବୁ ଯେ ଭିକ୍ଷା ମାଗିଲେ ଗୁଣ ଓ ଗୌରବ ଉଭୟ ହିଁ ବିନଷ୍ଟ ହୁଏ । ସମସ୍ତେ ନିର୍ଦ୍ଧନ ଜନ ବୋଲି ଉପହାସ କରନ୍ତି, ଆଦର ବା ଅନୁକମ୍ପା କେହି ନାହିଁ । ଶିବ ! ତୁ ଅର୍କ ଓ ଧୁତୁରାଫୁଲ ପାଉ, କିନ୍ତୁ ହରି ଚମ୍ପା ଫୁଲ ପାଇଥାଏ । ହର, ଖଟ୍ୱାଙ୍ଗ କାଟି ଡମ୍ବରୁ ନିର୍ମାଣ କର, ତ୍ରିଶୂଳ ଫାଳ ଫାଳ କରି ଲାଙ୍ଗି ଳକାଅ । ବଳଦ ବାହନ ଥିଲେ କ୍ଷେତ୍ର-ହରଣ ହୁଏ । ଗଙ୍ଗାଜଳଧାର ପାଦରେ ଫିଙ୍ଗି ଦିଅ । ବିଦ୍ୟାପତି ଭଣନ୍ତି—ମହେଶ୍ୱର ! ଶୁଣ, "ଏଥିପାଇଁ ତୋର ସେବା କରୁଛି, ମୋର ଦେବତା ! ଏଥିରେ ଯେଉଁ ବର ପ୍ରାପ୍ତି ଘଟିବାର ଥିଲା, ସେହି ବରହିଁ ପ୍ରାପ୍ତ ହୋଇଛି । ଅନ୍ୟନ ଆଉ ଯିବ ନାହିଁ ।

